ନାଟକ : ପାଉଁଶତଳ ନିଆଁ
ନାଟ୍ୟକାର : ରମେଶ ପ୍ରସାଦ ପାଣିଗ୍ରାହୀ
ମୁଁ, ଆମ୍ଭେ ଓ ଆମ୍ଭେମାନେ
ପ୍ଲଟ ନଂ- ୧୦୫, ରସୁଲଗଡ଼
ଭୁବନେଶ୍ୱର, ପିନ୍: ୭୫୧୦୧୦
ମୋ : ୯୮୬୧୧୪୬୫୫୩ ॥

ପ୍ରଚ୍ଛଦ : ବାଦଲ ମହାନ୍ତି
ପ୍ରଥମ ସଂସ୍କରଣ : ନଭେମ୍ବର, ୨୦୨୨॥

ପ୍ରକାଶକ : ବର୍ଷା ପବ୍ଲିକେଶନ୍
ପ୍ଲଟ ନଂ ୭୨୨ (ପି), ଗୋପବନ୍ଧୁ ନଗର, ୟୁନିଟ୍-୮,
ଭୁବନେଶ୍ୱର-୧୨ ॥
ମୋ: ୯୭୭୮୦୩୫୭୬୭ ॥

ମୂଲ୍ୟ : ଟ.୨୦୦.୦୦(ଦୁଇ ଶହ ଟଙ୍କା ମାତ୍ର)

**PAUNSHATALA NIAAN**
**ODIA PLAY OF: RAMESH PRASAD PANIGRAHI**

*Mu, Ambhe O Ambhemane*
*Plot No : 105, Rsulgarh, Bhubaneswar*
*Pin : 751010*
*Mob: 9861146553*

Cover Design: Badal Mohanty
First Edition: November-2022


Published & Printed by Barsha Publication
Plot no.:722 (p), Gopabandhu Nagar,
Unit-8, Bhubaneswar-12
Mob No ; 9778035767

**RS. 150.00**
(Rupees One Hundred Fifty Only)

## ଉତ୍ସର୍ଗ ପତ୍ର

||||||||||||||||||||||

ଯେଉଁ ନାଟ୍ୟଦ୍ରୋହୀ ସାହିତ୍ୟ କଟୁଆଳମାନେ ରମେଶ ପାଣିଗ୍ରାହୀ ଓ ତା'ର ସାରସ୍ୱତ ଯାତ୍ରାକୁ ଦଗ୍ଧିଭୂତ କରିବା ପାଇଁ ବନ୍ଧୁତାର ପାଉଁଶ ତଳେ ସଦା ସକ୍ରିୟ, ସେଇ ପ୍ରଚ୍ଛନ୍ନ ନିଆଁଝୁଲମାନଙ୍କୁ...।।

– ରମେଶ ପ୍ରସାଦ ପାଣିଗ୍ରାହୀ

# ଅଭୀଷ୍ଟ : ପାଉଁଶତଳ ନିଆଁ

ପାଉଁଶ ତଳର ନିଆଁ ଭିତରେ ଏକ ବିପୁଳ ସମ୍ଭାବନା ଅନ୍ତର୍ନିହିତ। ଏହା ଏକ ଦ୍ୱନ୍ଦ୍ୱ କିମ୍ବା ସଂଘର୍ଷର ରୂପକଳ୍ପ ହେଇପାରେ। କଥାରେ ଅଛି: 'ନିଆଁ ସହିତ ଖେଳ'। ଏହି ରଢ଼ି ଭିତରେ ଗୋଟିଏ ସମ୍ଭାବ୍ୟ ବିପଦ ସମ୍ପର୍କରେ ସୂଚନା ମିଳେ। ନିଆଁ (ଅଗ୍ନି) ଋକ୍‌ବେଦର ପ୍ରଥମ ଦେବତା। ଜନ୍ମ, ବିବାହ ଓ ମୃତ୍ୟୁବେଳେ ତାଙ୍କୁ ଆବାହନ କରାଯାଏ। ଗୃହରେ ପ୍ରଜ୍ୱଳିତ ହେଲେ ସେ ହୋଇଯାନ୍ତି 'ଗାର୍ହ୍ୱପତ୍ୟ ଅଗ୍ନି'। ଯଜ୍ଞରେ ଆବାହନ କଲେ ମନ୍ତ୍ରରୁ ସେ ଜନ୍ମ ନିଅନ୍ତି। ସୂର୍ଯ୍ୟ, ନକ୍ଷତ୍ର ମଣ୍ଡଳ, ଧୂମକେତୁ ଓ ଉଲ୍‌କା ଇତ୍ୟାଦିଙ୍କୁ 'ମହାଜାଗତିକ ଅଗ୍ନି' କୁହାଯାଏ। ଅନ୍ତରୀକ୍ଷର ଗଭୀରତମ ପ୍ରଦେଶରୁ ଆହ୍ୱାନ କରି ମନ୍ତ୍ରଦ୍ରଷ୍ଟାମାନେ ଏମାନଙ୍କୁ ନିୟନ୍ତ୍ରିତ କରନ୍ତି।

ଉପନିଷଦରେ ଅଗ୍ନି ପ୍ରଥମତଃ ପଞ୍ଚଭୂତରୁ ଗୋଟିଏ ଭୂତ। ଦ୍ୱିତୀୟତଃ ଆୟୁର୍ବେଦରେ ଏହା ଜଠରାଗ୍ନି, କ୍ଷୁଧା ଓ ଜଠର ସହିତ ଏହାର ସମ୍ପର୍କ। ତୃତୀୟତଃ ଯୌନ କାମନାରେ ଏହା ପୁରୁଷ ଓ ସ୍ତ୍ରୀମାନଙ୍କର ଲିଙ୍ଗରେ ଅବସ୍ଥିତ। ଯୌନ କାମନା ଓ କର୍ମରେ ଏହା ଅଗ୍ନି ସହିତ ସଂଯୁକ୍ତ ହୋଇଥାଏ। ବୌଦ୍ଧତନ୍ତ୍ର ଯୋଗକ୍ରିୟାରେ ବାୟୁର ପ୍ରଭାବ/ନିଶ୍ୱାସ ପ୍ରଶ୍ୱାସମାନଙ୍କୁ 'ଅଗ୍ନି' କୁହାଯାଏ।

ପାଉଁଶତଳ ନିଆଁରୁ ଗାର୍ହ୍ୱପତ୍ୟ ଅଗ୍ନି ଜନ୍ମ ନିଅନ୍ତି। ଏହା ଅନେକ ସମୟରେ ଗୃହରୁ ଅରଣ୍ୟ ପର୍ଯ୍ୟନ୍ତ ବ୍ୟାପି ଯାଇପାରେ। ଅର୍ଥାତ୍ ପାଉଁଶ ତଳର ସୁପ୍ତ ଉଷ୍ଣତା ଭିତରେ ଏକ ବିରାଟ ଅଗ୍ନିକାଣ୍ଡର ଦାରୁଣତା ଅନ୍ତର୍ନିହିତ ଅଛି। ଏସବୁକୁ କେବଳ ଧ୍ୟାନବଳରେ ନିର୍ବାପନ କରାଯାଏ। ପାଉଁଶ ତଳେ ଥିବା ନିଆଁକୁ ବୌଦ୍ଧଧର୍ମାବଲମ୍ବୀମାନେ' 'ବୋଧିଚିତ୍ତ' ବା ଜ୍ୱଳନ୍ତ ଚେତନା ସହ ସମ୍ପର୍କିତ କରି ଏକ ସୁଦୃଢ଼ ପ୍ରତୀକ ନିର୍ମାଣ କରନ୍ତି।

ଏହି ନାଟକରେ ରାଜନୈତିକ ଓ କୂଟନୈତିକ ସଂଘର୍ଷର ଅନ୍ତରାଳରେ ଉପସ୍ଥିତ ଥିବା ଅଗ୍ନିକୁ ଆହ୍ୱାନ କରାଯାଇଛି। ଏଥିରେ ବ୍ୟବହୃତ ହିଂସାତ୍ମକ ଘଟଣାଗୁଡ଼ିକର ଫଳାଫଳଗୁଡ଼ିକ ପାଉଁଶତଳର ନିଆଁ ଦ୍ୱାରା ସଂକ୍ରମିତ। ବବ୍‌ଲୁ ଓ ବିଉଟିର ପ୍ରେମ ଯଦି ପାଉଁଶ, ତାଙ୍କ ସମ୍ପର୍କର ଅଭ୍ୟନ୍ତରରେ ଥିବା ଯୌନତା ମଧ୍ୟ ଅଗ୍ନିର ସ୍ୱରୂପ।

ମୂଳରୁ ଶେଷଯାଏଁ ଅଗ୍ନି ଏଇ ନାଟକର ମୁଖ୍ୟ ଚିନ୍ତନ ବିମ୍ବ। ଏହା ଏକ କାହାଣୀ ନୁହେଁ। ଅଗ୍ନି ସଞ୍ଚାରକାରୀ ଏକ ରୂପକାତ୍ମକ ପରିବେଷଣ। ବିଉଟି ତଥାକଥିତ ସାଂପ୍ରତିକ ସଭ୍ୟତା ଉପରେ ଘୃଣାର ଛେପ ପକେଇଲା ବେଳେ ପାଉଁଶ ତଳର ନିଆଁକୁ ଆହ୍ୱାନ କରୁଛି।

**- ରମେଶ ପ୍ରସାଦ ପାଣିଗ୍ରାହୀ**

# ପାତ୍ର-ପାତ୍ରୀ

୧ ଅରକ୍ଷିତ ଡାକୁଆ (ବୟସ:୫୨)
୨ ନରି ମଉସା (ବୟସ: ୬୦)
୩ ମଦନା (ବୟସ: ୨୫)
୪ ବିଜୁ (ବୟସ: ୨୩)
୫ ସୁମନ୍ତ (ବବ୍‌ଲୁ) (ବୟସ: ୨୬)
୬ ପ୍ରତାପ ଜେନା (ପ୍ରୌଢ଼) (ବୟସ: ୫୦)
୭ ପୀତାମ୍ବର କାନୁନ୍‌ଗୋ (ଇଲିସିଙ୍କ ବଡ଼ଭାଇ) (ବୟସ: ୪୫)
୮ ଏ.ଏସ୍.ଆଇ. (ବୟସ: ୩୨)
୯ ବିଶ୍ୱାମିତ୍ର ମହାନ୍ତି (ବବ୍‌ଲୁର ବାପା) (ବୟସ: ୬୦)
୧୦ ଭୀମା (ଗୁଣ୍ଡା) (ବୟସ: ୩୦)
୧୧ ସ୍ଲୋଗାନ୍ ନେତା-୧
୧୨ ସ୍ଲୋଗାନ୍ ନେତା-୨
୧୩ ସ୍ଲୋଗାନ୍ ନେତା-୩
୧୪ ଗୁଣ୍ଡା- ୧
୧୫ ଗୁଣ୍ଡା- ୨
୧୬ ଗୁଣ୍ଡା- ୩
୧୭ ବୁଲୁଭାଇ (ଫୁଲକୋବି ନେତା) (ବୟସ: ୩୦)
୧୮ ସାମ୍ବାଦିକ-୧
୧୯ ସାମ୍ବାଦିକ-୨
୨୦ ସୋମନାଥ
୨୧ ଖୋକା କାନୁନ୍‌ଗୋ (ପୀତାମ୍ବରଙ୍କ ପୁଅ) (ବୟସ: ୨୫)
୨୨ ଡ୍ରାଇଭର୍
୨୩ ଖାନସାମା

**ନାରୀ ଚରିତ୍ର**

୧ ଇଲିସି (ବବ୍‌ଲୁର ବୋଉ) (ବୟସ: ୪୬)
୨ ସୁକୁମାରୀ (ପୀତାମ୍ବରଙ୍କ ପତ୍ନୀ) (ବୟସ: ୪୪)
୩ ବିୟୁଟି (ବୟସ: ୧୬)

# ପ୍ରଥମ ଦୃଶ୍ୟ

(ଉପର ମଞ୍ଚର ମଧ୍ୟ ଭାଗରେ ଏକ ବିଶାଳକାୟ ବଟବୃକ୍ଷ। ବୃକ୍ଷର ବାମ ପଟେ ମଦନ ଡାକୁଆର ସେଲୁନ୍। ନାମ ଫଳକରେ ଲେଖା ହେଇଚି 'ଯୁଗଜ୍ୟୋତି କେଶ କର୍ତ୍ତନାଳୟ।' ଛୋଟ କ୍ୟାବିନ୍‌ଟିଏ। ବୃକ୍ଷର ଡାହାଣ ପଟକୁ ନରି ମଉସାଙ୍କ ଚ଼' ଦୋକାନ। ଦୁଇପଟେ ଦୁଇଟା ବେଞ୍ଚ୍ ପଡ଼ିଚି।

ମଞ୍ଚ ଆଲୋକିତ ହେଲାପରେ ଦେଖାଗଲା ମଦନ ଡାକୁଆ (୨୦-୨୨ ବର୍ଷ) ସୁମନ୍ତ ମହାନ୍ତିର ବାଳ କାଟୁଚି, ଅନ୍ୟ ପଟେ ନରି ମଉସା ଗରମ ଗରମ ବରା ପକୋଡ଼ି ଛାଣୁଛନ୍ତି। ମଉସା ବୁଢ଼ାଲୋକ (୫୫-୬୦ ବର୍ଷ)। ପ୍ରବେଶ କଲେ ଅରକ୍ଷିତ ଡାକୁଆ, ଜଣେ ମଧ୍ୟ ବୟସ୍କ ରାଜନେତା, ମୋବାଇଲ୍‌ରେ କଥା ହେଉଛନ୍ତି କାହା ସାଙ୍ଗରେ)

ଅରକ୍ଷିତ: ହଉ ତମେ ଆସ ଦେଖିବା, କ'ଣ ହେଲା ? ଭୁବନେଶ୍ୱର ଯିବାକୁ ହବ ? ମତେ ? ନାଇଁ ନାଇଁ ନାଇଁ... ମୋ' ପାଖରେ ଟାଇମ୍ କାଇଁ... ? ଭୁବନେଶ୍ୱର ଗଲେ କ'ଣ ତିନି ଦିନରୁ

କମ୍ ଲାଗିବ? ଶୁଣ... ଏବେ ପରା ଦିଲ୍ଲୀରୁ ଫେରୁଚି, ଆଠଦିନ ପରେ... ହଁ... ମତେ ସେମାନେ ଦଳର ପ୍ରଭାରୀ କରିଦେଇଛନ୍ତି... ନାଇଁ... ନାଇଁ... ନୀଳଚକ୍ର ପାର୍ଟି ନାଁ ଟା ବଦଳିଗଲା। ନାଁ ବଦଳେଇ କରାଗଲା ବନ୍ଧାକୋବି ଦଳ। (ହସିଲେ) ଆରେ ହଁ' ହେ! ବନ୍ଧାକୋବି ଦଳ। ବନ୍ଧାକୋବିର ପତ୍ରଗୁଡ଼ାକ ଯେମିତି ଗୋଟାଏ ଉପରେ ଗୋଟେ ମାଡ଼ିହେଇ ରହିଛନ୍ତି- ଠିକ୍ ସେମିତି... ଯେତେ ବିରୋଧୀ ଦଳ ଅଛନ୍ତି... ସମସ୍ତେ ଏକଜୁଟ୍ ହେଇ... ବାନ୍ଧି ହୋଇ ରହିବେ ହୋ'... ଆମର ପୁଣି ଆଉ ଶତ୍ରୁ କିଏ? ମହାରାଷ୍ଟ୍ରରେ ଯେମିତି ଅଗାଡ଼ି ସରକାର ହେଇଥିଲା... ଠିକ୍ ସେମିତି ନହେଲେ ବି ସେମିତି ବୋଲି ଧରିନବାକୁ ହବ। ହଉ ତମେ ଆସ... ମୁଁ ମନ୍ତ୍ରୀଙ୍କୁ ଫୋନ୍ କରିଦେବି, ଆସ, ଆସ... ଆସିଲେ ଏଇଠି କଥା ହେବା। ହଉ ହଉ ହଉ- ମଟର ସାଇକେଲ୍‌ରେ ପଳେଇ ଆସ! (ଫୋନ୍ କାଟିଦେଲେ) ଓହୋ! କିରେ ମତେ କାଇଁକି ମିଛୁଟାରେ ଘୋଷାଡୁଛ ଭୋବିନିଶର? ଏକୁଟିଆ ଲୋକ ମୁଁ...ଯଦି ସବୁବେଳେ ଭୋବିନିଶର ଦୌଡ଼ିବି ଏଇଠି ଧାନକଳ ଚାଲିବ କେମିତି? ଗୁବେଲ୍ ହେଇଯିବ ଶଳା...ପିଲାଛୁଆ ଖାଇବେ କ'ଣ?)

ନରି ମଉସା: (ଦୂରରୁ ବଡ଼ ପାଟିରେ ଡାକିଲା) ସାରେ! ନମସ୍କାର! ସକାଳ ଚା'ଟା ପିଇବେନି?

ଅରକ୍ଷିତ: କ'ଣ ସାହୁଏ! କେମିତି ଚାଲିଚି ତମ ସଂସ୍ଥା?

ନରି ମଉସା: କାଇଁ ସାରେ ଆଠଦିନ ହେଲା କୁଆଡ଼େ ଦେଖାନଥିଲେ? କଣ କମାନ ଯାଇଥିଲେ କି ସାର୍?

ଅରକ୍ଷିତ: କମାନ କ'ଣ କିହୋ ସାହୁଏ? ଓହୋ ଟୁଅର୍? (ହସି) ହଃ ହଃ... ଯାଇଥିଲି ଦିଲ୍ଲୀ ଆଡ଼େ ଟିକିଏ!

ନରି: ଦିଲ୍ଲୀରେ କ'ଣ କାମ ଥିଲା କି ସାରେ?

ଅରକ୍ଷିତ: ଆହେ ନୀଳଚକ୍ର ପାର୍ଟି ଭାଙ୍ଗିଯାଇ ବନ୍ଧାକୋବି ପାର୍ଟି ହେଲା। ମତେ ସେମାନେ ଓଡ଼ିଶା ମଣ୍ଡଳର ଅଧିକାରୀ କଲେ।

ନରି: ଏଇଟା ତା'ହେଲେ ଶୁଭ ଖବର! ବଢ଼ିଆ ହେଲା। ଆମ ଗାଁର ମହତ ବଢ଼ିଗଲା ସାରେ! ଗରମ ଗରମ ବରା ଛାଣିଚି- ଦେବି ଦି'ଟା?

ଅରକ୍ଷିତ: ଦବ ଯେ... ମନିପର୍ସଟା ଛାଡ଼ିଦେଇ ଆସିଚି...।

ନରି: କି କଥା କହୁଛନ୍ତି ଅରକ୍ଷିତ ସାର୍? ଆପଣ ଚା' ପିଇବେ, ବରା ଖାଇବେ... ପଇସା କ'ଣ ଦେବେ ସାର୍? ଆପଣଙ୍କ ପରି ଲୋକଙ୍କୁ କ'ଣ ବରା ଦିଇଟା, ଚା' କପେ ଦବା ପାଇଁ ଆମର ସାମର୍ଥ୍ୟ ନାଇଁ? ନିଅନ୍ତୁ ବରା।

(ବରା ବଢ଼େଇ ଦେଇ)

ଅରକ୍ଷିତ: ସେମିତି କହିଲେ ସଂସ୍ଥା କେମିତି ଚଳିବ ସାହୁଏ? ଦୁନିଆ କହିବ- ଦୁର୍ନୀତି। କଥା ହେଲା- ମୁଁ ବନ୍ଧାକୋବି ପାର୍ଟିର ଛାମୁଆ କର୍ମୀ ଭାବେ ଚହୁଁଚି- ତମର ଏ ଚଳିଆ ଦୋକାନ କୋଠା ହଉ... ଫାଇଭ୍‌ଷ୍ଟାର ହଉ। ଆମ ଗାଁକୁ ଯେତେସବୁ ବଡ଼ବଡ଼ିଆ ଆସୁଛନ୍ତି- ତମ ହୋଟେଲ୍‌ରୁ ଖାଆନ୍ତୁ- (ମଦନା ଆଡ଼େ) ଆରେ ମଦନା... କ'ଣ ଚଳିଚିରେ?

ମଦନା: (ବାଳ କାଟୁ କାଟୁ) ଜୁହାର ହଉଚି ଦାଦା!

ଅରକ୍ଷିତ: ଜୁହାର! ଆମେ ଚହୁଁଚୁ ଆମ ମଦନାର ଯୁଗଜ୍ୟୋତି ସେଲୁନ୍‌ରେ ଟି.ଭି. ଆଉ ଏ.ସି. ଲାଗୁ...।

ମଦନା: ଦାଦା... ତମ ଘରକୁ ଗାଡ଼ିରେ କିଏ ଆସିଥିଲା କି? ଆମେ ସବୁ କାବା ହେଇ ଅନେଇଚୁ! ଆମ ଦାଦା ଘର ଆଗରେ ନାଲି କାର୍ ଲାଗିଲା- ଦେଖି ଗାଁ ପିଲାଏ ଦୌଡ଼ୁଥିଲେ। କିଏ ଆସିଥିଲା କି ଦାଦା?

ଅରକ୍ଷିତ: କିଏ ଆଉ ଆସିବ କିରେ? ଯୁଧିଷ୍ଠିର ସାମନ୍ତରା... ତମ ସ୍ୱାସ୍ଥ୍ୟ ବିଭାଗ ମନ୍ତ୍ରୀ। ସିଏ ଆସିଥିଲେ।

ନରି: ଦି'ଟା କାର୍ ଲାଗିଥିଲା ପରା? ମନ୍ତ୍ରୀ କ'ଣ ଦିଇଟା କାର୍‌ରେ ତମ ଘରକୁ ଆସିଥିଲେ?

ଅରକ୍ଷିତ: ଆରେ ମୂର୍ଖ ଭଳିଆ କଣ ହଉଚ..? ମନ୍ତ୍ରୀ କ'ଣ ଏକଲା ଆସିବେ? ପୁଲିସ୍, ପ୍ରାଇଭେଟ୍ ସେକ୍ରେଟେରୀ, ଓଏସ୍‌ଡ଼ି ଡ୍ରାଇଭର- ସମସ୍ତେ ଆସିଥିଲେ।

ନରି: କୁହା ନାଇଁ, ବୋଲା ନାଇଁ... ହଠାତ୍ ମନ୍ତ୍ରୀଙ୍କ ଗାଡ଼ି ତମ ଦୁଆରେ ?

ଅରକ୍ଷିତ: ତମେ କ'ଣ ଜାଣିବ ସାହୁଏ ? ମନ୍ତ୍ରୀ ଆମର ଲେଖା ଯୋଖା ବନ୍ଧୁବାନ୍ଧବ ହୁଅନ୍ତି ବୋଲି ?

ମଦନା: ବନ୍ଧୁବାନ୍ଧବ ? ମୁଁ ତ ଜାଣିନି ।

ନରି: ତମେ ତ ଡାକୁଆ- ଆଉ ସିଏ ସାମନ୍ତରା- ବନ୍ଧୁବାନ୍ଧବ କେମିତି ହେଲ ?

ଅରକ୍ଷିତ: ସୂର୍ଯ୍ୟବନ୍ଧୁ ! ଯୁଧିଷ୍ଠିର ସାମନ୍ତରାଙ୍କ ବାପା ସବୁବେଳେ ମୋ ବାପାକୁ ଡକାଇ କ୍ଷିଅର ହୁଅନ୍ତି । ଦି'ଦିନ, ଡେଲୀ ଯାଇ କ୍ଷିଅର କରୁ କରୁ ମୋ' ବାପା ଯୁଧିଷ୍ଠିର ଡାକୁଆ ଯୁଧିଷ୍ଠିର ସାମନ୍ତରାଙ୍କର ମିତ ହୋଇଗଲେ । ଭୋଜିଭାତରେ ଗୁଆ ଦିଆହୁଏ !

ମଦନା: ସେଇଠୁ ?

ଅରକ୍ଷିତ: ମୁଁ ମନ୍ତ୍ରୀଙ୍କୁ 'ଦାଦା' ବୋଲି ଡାକେ ଆଉ କ'ଣ ? ସିଏ କ'ଣ ଖାଲି ହାତରେ ଆସିବେ ?

ନରି: ଆଉ ?

ଅରକ୍ଷିତ: ହାତରେ ଗୋଟେ ବିରାଟ ଫୁଲତୋଡ଼ା... ଡ୍ରାଇଭର ଧରିଥିଲା ଦି'କିଲୋ ଛେନାପୋଡ଼... ମୋ ସ୍ତ୍ରୀ ପାଇଁ ଗୋଟେ ସମ୍ବଲପୁରୀ ଶାଢ଼ି... ଛୁଆଙ୍କ ପାଇଁ ବଡ଼ ଚକୋଲେଟ ପାଞ୍ଚଟା !

ମଦନା: ମୋ' ପାଇଁ ରଖିଥିବ ଦାଦା- ମୁଁ ଗାଧୁଆବେଳେ ଯିବି ।

ଅରକ୍ଷିତ: ଆରେ ଭାଗ୍ୟ ଭଲ- ମୁଁ ଘରେ ଥିଲି । ମନ୍ତ୍ରୀ ଆସିଲାବେଳକୁ ସାଙ୍ଗେ ସାଙ୍ଗେ ଗଛରୁ ନଡ଼ିଆ ତୋଳା ହେଲା- ନଡ଼ିଆ ତ ନୁହେଁ ପଇଡ଼, ଡ୍ରାଇଭର, ଓ.ଏସ୍.ଡ଼ି, ପୋଲିସ୍... ସମସ୍ତେ ପିଇଲେ ।

ନରି: ପିଇବେନି ? ତମ ବାଡ଼ିର ପଇଡ଼ ପାଣି... ଭାରି ମିଠା ବୋଲି ଖବର ।

ଅରକ୍ଷିତ: ଆରେ ଆମ ପଇଡ଼ ପାଣି ମିଠା ବୋଲି ମୁଁ କ'ଣ ତା' ବୋଲି ମନ୍ତ୍ରୀଙ୍କ ଆଗରେ ବାହାଦୂରୀ ମାରିବି ? ମନ୍ତ୍ରୀଙ୍କ

ବାଡ଼ିରେ ଯୋଉ ନଡ଼ିଆ ଗଛ ଅଛି, ସେଥିରେ ଶାଖାପ୍ରଶାଖା ଅନେକ ।

ନରି: ଏଁ ! ନଡ଼ିଆ ଗଛରେ ପୁଣି ଶାଖାପ୍ରଶାଖା ?

ଅରକ୍ଷିତ: ଟାଙ୍କ ତଳକୋଲର ଗାଁର ପିଲାମାନେ ମଧ୍ୟ ନଡ଼ିଆ ଗଛରେ ଚଢ଼ିଯାଆନ୍ତି । ଗଛରେ ଚଢ଼ି ନଡ଼ିଆ ଖାଆନ୍ତି । ହେଲେ ତାଙ୍କ ନଡ଼ିଆ ଗଛର ବିଶେଷତ୍ୱ ହେଲା- ରାତିରେ ତୋଳିଥିବ ସକାଳକୁ ପୁଣି ଗଛରେ ନଡ଼ିଆ ଭର୍ତ୍ତି ହେଇଯାଏ ।

ନରି: କେମିତି ? ଇଏ ତ ବଡ଼ ଆଚମ୍ବିତ କଥା !

ଅରକ୍ଷିତ: ସାହୁଏ ! ମନ୍ତ୍ରୀଙ୍କ ନଡ଼ିଆ ଗଛରେ ମା' ଶାକମ୍ବରୀ ଠାକୁରାଣୀ ବିଜେ ହେଇଛନ୍ତି । ତାଙ୍କ ଦୟାରୁ ଏକଥା ଘଟେ ।

ନରି: ତାଙ୍କ ଦୟାରୁ ହିଁ ମନ୍ତ୍ରୀ ବୋଧେ ଇଲେକ୍‌ସନ ଜିତୁଛନ୍ତି !

ଅରକ୍ଷିତ: ଆରେ ମନ୍ତ୍ରୀଙ୍କ ଧର୍ମପତ୍ନୀ ଅହଲ୍ୟା... ତାଙ୍କ କଥା ଶୁଣିଲେ କାବା ହେଇଯିବ ସାହୁଏ ! ବିଲେଇଛୁଆ ପୋଷିବା ତାଙ୍କର ଭାରି ସଉକ । ସାତ ଆଠଟା ବିଲେଇଛୁଆଙ୍କୁ ପୋଷିଥିଲେ । ହେଲେ ଦାଦା... ଯୁଧିଷ୍ଠିର ଦାଦା... ଏଥର ମନ୍ତ୍ରୀ ହେଲା ପରେ ଗୋଟେ ବାଘଛୁଆ ଆଣି ପୋଷିଛନ୍ତି... ।

ନରି: ଆଚ୍ଛା ? ବାଘଛୁଆଟା ଯେତେବେଳେ ବଡ଼ ହେଇଯିବ... ? ସେତେବେଳେ... ?

ଅରକ୍ଷିତ: ଆହେ ହେଇଯିବ କ'ଣ... ବଡ଼ ହେଇଗଲାଣି... ହେଲେ ସେଇଟା ନିରାମିଷ ଖାଏ...

ନରି: ନିରାମିଷ ଖାଉଚି ବାଘଛୁଆ ? ଯଦି ବା କ୍ଷୀର ପିଉଥିବ... ଦିନକୁ ତ ଲିଟରେ ଦି' ଲିଟର ପିଉଥିବ ସାର୍ ?

ଅରକ୍ଷିତ: ଖାଲି କ'ଣ କ୍ଷୀର ପିଉଚି ? ଅମୃତଭଣ୍ଡା, କଦଳୀ ସବୁ ଖାଉଚି...

ନରି: (ଆଶ୍ଚର୍ଯ୍ୟ) ଏଁ ?

ଅରକ୍ଷିତ: ସାହୁଏ ! ତମକୁ ମିଛ ମତେ ସତ... ଆମର ମନ୍ତ୍ରୀଙ୍କ ଘରକୁ ସବୁବେଳେ ଯିବାଆସିବା ଲାଗିଛି । ହେଲେ ଏଥରକ ଦେଖିଲି ତାଙ୍କ ବାଘଛୁଆ ଖଟା କମଳା ଖାଉଚି !

ନରି: କ'ଣ ଚୋପା ସହିତ ଖାଇ ଯାଉଚି ?

| | |
|---|---|
| ଅରକ୍ଷିତ: | ଆହେ ନାଇଁ ସାହୁଏ ! ନଖରେ ସୁନ୍ଦର ଭାବରେ ଚୋପା ଛଡ଼େଇ କମଳା ଖାଇଲା... ମୁଁ ପଚାରିଲି ଏହା କେମନ୍ତ ସମ୍ଭବ ହେଲା ! ଖୁଡ଼ୀ କହିଲା- ତାଲିମ୍ ପାଇଚି, ବଲାଙ୍ଗୀରରୁ ଗୋଟେ ତାନ୍ତ୍ରିକ ଆସି ଦାଣ୍ଡଘରେ ରହୁଚି । ସିଏ ସେ ବାଘଛୁଆଟାକୁ ମନ୍ତ୍ର କରିଚି । |
| ନରି: | କ'ଣ ବିଦ୍ୟା ପେଷଣ କରିଚି ! |
| ଅରକ୍ଷିତ: | ନହେଲେ ଯୁଧିଷ୍ଠିର ଦାଦା ସକାଳୁ ସେ ବାଘ ପିଠିରେ ବସି ବଗିଚାରେ ବୁଲୁଥାନ୍ତା ? ଛାଡ଼ ! |
| ନରି: | ସାରେ ବରାଟା ଚାଖନ୍ତୁ... କେମିତି ହେଇଚି । |
| ଅରକ୍ଷିତ: | ହଉ ହଉ- କହୁଚ ଯେତେବେଳେ... |
| | (ବେଞ୍ଚ ଉପରେ ବସି ଅରକ୍ଷିତ ବରା ଖାଇବାରେ ଲାଗିଲା । ଏଇ ଜୋନ୍‌ରେ ଆଲୁଅ ସ୍ତିମିତ ହେଲା । ମଦନର କେଶ କର୍ତ୍ତନାଳୟରେ ଆଲୁଅର ତୀବ୍ରତା ବଢ଼ିଲା । ମଦନ ସୁମନ୍ତ ମହାନ୍ତିର ବାଳ କାଟି ସାରି କଟାବାଳ ଘୋଡ଼େଇ ହେଇଥିବା ଲୁଗାରେ ବୁଜୁଳି ବାନ୍ଧି କେବିନ୍ ତଳର ଡଷ୍ଟବିନ୍‌ରେ ପକେଇଲା !) |
| ମଦନ: | ମଉସା ! ଚା' କପେ ହବ ? |
| ନରି: | ସାରେ ପରା ଅଛନ୍ତି । ଏଇଲେ କ'ଣ ଯାଇ ହବ ? ତୁ ଆସି ପିଇଦେଇ ଯା' । |
| ମଦନ: | ଆଚ୍ଛା ! ଦେଖୁଚି ! ଆଚ୍ଛା ସୁମନ୍ତ ବାବୁ ! ତମର ସରିଲା ନା ଦାଢ଼ି ବନେଇବ ? |
| ସୁମନ୍ତ: | ଦାଢ଼ିଟା ବନେଇ ଦେ' । |
| | (ମଦନ ସୁମନ୍ତ ଗାଲରେ ସାବୁନ୍ ମାରୁମାରୁ ପଚାରିଲା) |
| ମଦନ: | ଗାଲରେ କ'ଣ ହେଇଚି ବାବୁ ? ଖଣ୍ଡିଆଖାବରା କେମିତି ହେଲା ? |
| ସୁମନ୍ତ: | ମାଡ଼, ପ୍ରବଳ ମାଡ଼ ହେଇଚି । |
| ମଦନ: | ମାଡ଼ ? କିଏ ମାଇଲା ସାର୍ ? |
| ସୁମନ୍ତ: | ବାପା ! ଶଳା ବାପ ହାତର ମାଡ଼ ! |
| ମଦନ: | ତମ ବାପାଙ୍କୁ ମୁଁ କ'ଣ ଜାଣିନି ସାର୍ ? ସିଏ ତ ପତଳା |

ହେଇ ଡେଙ୍ଗା ଲୋକ ! ପହିଲିମାନ ନୁହନ୍ତି, ଏତେ ଜୋର୍‌ରେ କ'ଣ ମାଡ଼ ହେଇଚି ?

(ବାହାରୁ ବିଜୁ ଆସି ବେଞ୍ଚରେ ବସିଲା ଆଉ ପଚାରିଲା।)

ବିଜୁ: ଫାଙ୍କା ଅଛୁ ମଦନା ? ଦାଢ଼ିଟା ବନେଇବା।

ମଦନ: ଟିକେ ବସିଯା' ବିଜୁବାବୁ ! ଖବରକାଗଜଟା ପଢୁଥା'... ଏଇଠି ଟିକିଏ ଦେଖିରହିଁ କ୍ଷୁର ବୁଲେଇବାକୁ ପଡୁଚି। ଗାଲସାରା ଆବୁ ଆବୁ... ଆଉ ଖଣ୍ଡିଆ... ତରବର ହେଲେ କଟିଯିବ !

ବିଜୁ: ଖଣ୍ଡିଆ କ'ଣ ? କିଏ ସେଇଟା... ? ଆରେ... ସୁମନ୍ତ କିରେ ? କ'ଣ ହେଇଚି ?

ସୁମନ୍ତ: ମାଡ଼ ! ମାଡ଼ ! ମାଡ଼ ହେଇଚି।

ବିଜୁ: ଆବେ ମାଡ଼ ତୁ ଦେଇଚୁ ନା ଖାଇଚୁ ବେ ?

ସୁମନ୍ତ: ଆବେ ତୋ କଥା ଶୁଣିକି ଖାଇଚି।

ବିଜୁ: ମୁଁ କ'ଣ କଲି ? ତୁ ଶଳା କହିଲୁ ବାପ ତୋର ମାଲ ପିଇ ବୋଉକୁ ତୋର ଖୋବୁଚି ! ସେଇଥିପାଇଁ ବାପକୁ ଉତ୍ତମ ମଧ୍ୟମ ବ୍ୟବସ୍ଥା କରିବାକୁ ହବ।

ସୁମନ୍ତ: ଆଉ ବ୍ୟବସ୍ଥା, ଶଳା ପିଲାଦିନେ ସଂସ୍କୃତ ଶବ୍ଦ-ଧାତୁ ଘୋଷି ପାରୁନଥିଲି ବୋଲି ପଣ୍ଡିତେ ବେତମାଡ଼ କରି ନୋଳା ଫଟଉ ଥିଲେ।

ବିଜୁ: ଆବେ ସେ ପିଲାଦିନ କଥା ଛାଡ଼ ! ତୁ ପଚାରୁଥିଲୁ ବାପକୁ କେମିତି ବଜେଇବୁ। ମଦୁଆ ବୋପାକୁ ପିଟିବାର ବୀଜମନ୍ତ୍ର ଦେଇଥିଲି। କ'ଣ କଲୁ ?

ସୁମନ୍ତ: ତୁ କହିଥିଲୁ ନଇଁପଡ଼ି ବାପର ଗୋଡ଼ଟାକୁ ଧରି ଜୋର୍‌ରେ ଟାଣିଦବୁ। ହଁ, ଲାଇନ୍ ଚାଲିଗଲେ ଅନ୍ଧାରରେ ଏଗୁଡ଼ା କରିବୁ।

ବିଜୁ: କହିଥିଲି ହାତରେ ସେ ବଡ଼ କଇଁଚିଟା ଧରିଥିବୁ। ଧରିଥିଲୁ ?

ସୁମନ୍ତ: କଇଁଚି ମିଳିଲାନି ! (ଟିକେ ରହି) ଆରେ କଇଁଚିଟା ବୋଉ କୋଉଠି ରଖି ଦେଇଚି- ମିଳିଲାନି।

ବିଜୁ: ସେଇଠୁ କ'ଣ କଲୁ ?

ସୁମନ୍ତ: ନଇଁପଡ଼ି ଗୋଡ଼କୁ ଟାଣିଦେଲି, ସେତିକି।

ବିଜୁ: ପଡ଼ିଲାନି ?

ସୁମନ୍ତ: ମାରିଲା ଗୋଟେ ନାତ- ମୁଁ ଯାଇ ବାରଣ୍ଡା ତଳେ ଅଗଣାରେ ଯାଇ ପଡ଼ିଲି। ଭାଗ୍ୟ ଭଲ ଅନ୍ଧାର ହେଇଥିଲା- ବାପ ଚିହ୍ନିପାରିଲା ନାଇଁ ମତେ- ତା'ପରେ...।

ବିଜୁ: ତା'ପରେ ? ତତେ କହିଥିଲି ନାସଦାନିରେ ନାସ ଟିକିଏ ରଖିଥିବୁ। ବାପ ଶଳାର ନାକ ପାଖରେ ଶୁଙ୍ଘେଇ ଦବୁ... ଶଳା ଛିଙ୍କି ଛିଙ୍କି ହାଲିଆ ହେଇଯିବ। ସିଏ ଛିଙ୍କୁଥିବ ଆଉ ସେତିକିବେଳେ ତାର ଆଣ୍ଠୁଗଣ୍ଠିରେ କଇଁଚିରେ ବାଡ଼େଇବୁ। ଶଳା ଏକାଥରକେ ଛୋଟା ହେଇଯିବ। ବାଡ଼ୋଉଚି ପରା ତୋ ବୋଉକୁ? ଏକାଥରେ ସାଇଜ୍ ହେଇଯିବ !

ସୁମନ୍ତ: ଆବେ, ତୁ' ଯେମିତି କହିଥିଲୁ ସେମିତି କଲି। ଗୋଡ଼କୁ ଯେମିତି ଧରିଚି- ମାଇଲା ଗୋଟାଏ ନାତ, ମୁଁ ସେ ଅନ୍ଧାରରେ ଛିଟିକି ପଡ଼ିଲି। ତା'ପରେ ମୋର ଚୁଟିକୁ ଧରି ଖୋବି ଦେଇଗଲାରେ ମୁହଁ ସାରା- ଶଳା ମୁଦି ପିନ୍ଧା ହାତରେ ବକ୍‌ସିଂ ବିଧାଗୁଡ଼ା ଅଜାଡ଼ି ଦେଇଗଲା।

ବିଜୁ: ମାଲ ପିଇଥିଲା ?

ସୁମନ୍ତ: ଧୁମ୍। ମାତାଲ ଅବସ୍ଥାରେ ଥିଲା। ବଜେଇ ଦେଇଗଲା ମୁହଁସାରା... ମୁଁ ଶଳା ଚିତ୍କାର କରି ବୋଉକୁ ଡାକିଲି।

ବିଜୁ: ସେଇଠୁ ?

ସୁମନ୍ତ: ଅନ୍ଧାରରେ ଚିହ୍ନିଦେଲା କି କ'ଣ ମୁଁ ଜାଣିନି।

ବିଜୁ: ନାସଟା ପ୍ରୟୋଗ କଲୁନି ?

ସୁମନ୍ତ: ଆବେ କରିଥିଲିରେ, ଫୋପାଡ଼ି ଦେଲା- ନାସଦାନିଟା। ଛିଟ୍‌କି ପଡ଼ି କୋଉଠି ପଡ଼ିଲା ଜଣାପଡ଼ିଲା ନାଇଁ, ମୁଁ ଆଉ କରେ କ'ଣ ? ଅନ୍ଧାରରେ ଆଠଦଶଟା ଘୁସି ମାରିଲି ବାପାର ପେଟ ଆଉ ପଛକୁ।

ବିଜୁ: ମନା କରିଥିଲି ଶଳା- ହାତରେ ମାରିବୁନି, ବଡ଼ କପଡ଼ାକଟା କଇଁଚିଟା ଧରିଥିବୁ। ସେଇଥିରେ ଦବୁ ଆଣ୍ଠୁ ଉପରକୁ ଦବୁ।

ସୁମନ୍ତ: ଆରେ ଦେଇଚି ଆଠଦଶଟା। ହେଲେ ହଠାତ୍ ବୋଉ ଆସି

ମତେ ଟାଣି ଟାଣି ନେଇଗଲା।

ବିଜୁ: ଆରେ! ଇମିତି କ'ଣ ହେଲା? ମଦ ପିଇ ବୋଉକୁ ତୋର ପିଟୁଚି ବୋଲି କହୁଥିଲୁ। ସେଇଥିପାଇଁ ବାପା ସାଙ୍ଗେ ଯୁଦ୍ଧ କରିବାକୁ ପଡୁଚି ତତେ!

ସୁମନ୍ତ: ମାଡ଼ ଖାଇ ବାପା କି ଚିତ୍କାର କଲା, ବୋଉ ଆସିଲା ଅନ୍ଧାରରେ, ଦେଲା ପିଠା ପାଡିଆରେ ଦି' ଘଷିଟା...।

ମଦନ: (ହସିଲା) କହୁନ' ସେ କଥା! ସେଇଥିପାଇଁ ମୁହଁଟା ସାରା ଆବୁଡ଼ା ଖାବୁଡ଼ା ହେଇଯାଇଚି...

ବିଜୁ: ଦେଖି... ଆସ୍ତେ କିନା କ୍ଷୁର ବୁଲେଇବୁ ମଦନ!

ମଦନା: ବିଜୁବାବୁ ରକ୍ତ ଫକ୍ତ ବାହାରିଚି ବୋଧେ...? ଧୁମ୍ ଖୋବଣା ଖାଇଛନ୍ତି ସୁମନ୍ତ ବାବୁ!

ବିଜୁ: ଆସ୍ତେ...! ଆସ୍ତେ କରି କାଟେ! ବାପା ଘରେ ଅଛି ନା ଯାଇଚି ଭାଟି ଆଡ଼େ?

ସୁମନ୍ତ: ବାପା ଘରୁ ଗଲା, ମୁଁ ଉଠିକି ଏପଟେ ଆସିଲି।

(ମଦନ ଆସ୍ତେଆସ୍ତେ ଦାଢ଼ି କାଟିଲା। ଆବହ ସଂଗୀତ, ମଞ୍ଚ ଅନ୍ଧାର। ଅନ୍ଧାର ଭିତରେ ସେଲୁନ୍ ଓ ଘ'ଦୋକାନ ସାମ୍ନାରେ ଗୋଟେ କଳା ପରଦା ଗୋଟେ ପଟୁ ଅନ୍ୟ ପଟକୁ ଘୋଡ଼ାଇ ଦେଲା।)

# ଦ୍ୱିତୀୟ ଦୃଶ୍ୟ

(ବ୍ୟସ୍ତ ହୋଇ ଝାଡୁ ଧରି ପ୍ରବେଶ କଲେ ଇଲିସି। ମଧ୍ୟ ବୟସ୍କା ଏବଂ ସୁମନ୍ତର ମା'। ଗାଳି ଦେଉଥିଲେ ସୁମନ୍ତକୁ ଓ ଘରେ ଝାଡୁ ମାରୁଥିଲେ।)

ଇଲିସି: ଛି-ଛି-ଛି...ପାଠ ନାଇଁ ଶାଠ ନାଇଁ କିଛିନାଇଁ...ଦଶଟଙ୍କା ନେଇ ଦାଢ଼ି ବନଉଚି... କାଇଁ- ନିଜେ କାଟୁନୁ? ପଳେଇ ଯାଉଚି ମଦନ ସେଲୁନ୍‌କୁ।

ସୁମନ୍ତ: ଆଉ କ'ଣ କରିବି ? ରେଜର୍ ଗୋଟେ କିଣିଲେ ପଚାଶ ଟଙ୍କା, ବ୍ଲେଡ୍ ଗୋଟେ ପାଞ୍ଚ ଟଙ୍କା। ସେଭିଙ୍ଗ୍ କ୍ରିମ୍ ଗୋଟେ ତିରିଶି ଟଙ୍କା, ବ୍ରଶ୍ ଗୋଟେ ପନ୍ଦର ଟଙ୍କା... ଇଏ ହେଇଗଲା ଶହେ ଟଙ୍କା। ଦେଇପାରିବୁ ଶହେ ଟଙ୍କା ?

ଇଲିସି: ଦାଢ଼ି କାଟିବା ପାଇଁ ଶହେ ଟଙ୍କା ? କୋଉଠୁ ଆଣିବି ? ବାରଘର ବୁଲି ସାୟା ବ୍ଲାଉଜ୍ ସିଲେଇ କଲେ ଘରେ ଡାଲି ହାଣ୍ଡି ବସିବ... ଭଜା କି ତରକାରୀ ଟିକିଏ ହବ !

ସୁମନ୍ତ: ମୁଁ ଜାଣୁଚି ବୋଉ ! ସବୁ ଜାଣୁଚି !

ଇଲିସି: ଯା' ସିଲେଇ ମେସିନ୍‌ଟା ଆଣି ସେଇଠି ରଖେ!

ସୁମନ୍ତ: ତଳେ ବସି ସିଲେଇ କରିବୁ?

ଇଲିସି: ଆଗେ ଟେବୁଲଟା ଆଣି ତା' ଉପରେ ରଖେ ସିଲେଇ ମେସିନ୍!

(ଆବହ ସଂଗୀତ, ସୁମନ୍ତ ଭିତରୁ ଗୋଟେ ଷ୍ଟୁଲ୍...ଗୋଟେ ଟେବୁଲ ଓ ସିଲେଇ ମେସିନ୍ ଆଣି ରଖିବା ଭିତରେ ଇଲିସିର ସଂଳାପ)

ସୁମନ୍ତ: ତୋର ସେ ବଡ଼ କଇଁଚିଟା?

ଇଲିସି: କ'ଣ ହେଲା? କଇଁଚିଟା କ'ଣ କରିବୁ?

ସୁମନ୍ତ: ସେ ମଦୁଆ ବାପାର ଆଣ୍ଠୁ ଦିଇଟା ଭାଙ୍ଗିବାକୁ କଇଁଚିଟା ଦରକାର।

ଇଲିସି: (ରାଗି) ବାବ୍‌ଲୁ! ବାପାର ଆଣ୍ଠୁ ଭାଙ୍ଗି ଛୋଟା କରିବୁ? ଛୋଟାଲୋକ ଦେଖି ସେ ଗ୍ୟାସ କମ୍ପାନୀ ବାପାକୁ ତୋର ଚାକିରିରୁ ନିକାଲି ଦବ। ତା'ପରେ?

ସୁମନ୍ତ: ବଢ଼ିଆ ହବ! ମଦ ଖାଇବାକୁ ଆଉ ପଇସା ମିଳିବ ନାହିଁ।

ଇଲିସି: ଘର ଚଳିବ କେମିତି? ମତେ ସେଇଠୁ ଦି' ତିନି ଘରେ ରୋଷେଇ କରି ପାଞ୍ଚ/ ଛ ହଜାର କମେଇବାକୁ ପଡ଼ିବ। ସିଲେଇରୁ ସେମିତି କିଛି ମିଳୁନି। ପ୍ରତି ମାସରେ ବାହାଡ଼ାଗୁଡ଼ା ଗାଁରେ ସାୟା, ବ୍ଲାଉଜ୍ କିଏ ସିଲୋଉଚି? ଏ ଗୁଡ଼ାକ ଖାଲି ବାଆଁକୁ ବତା।

ସୁମନ୍ତ: ସିଲିଣ୍ଡର ବୋହି ବାପାକୁ ଯୋଉ ପାଞ୍ଚ/ଛ ହଜାର ମିଳୁଛି ସେଇଟାକୁ ହାତେଇବାକୁ ପଡ଼ିବ!

ଇଲିସି: ସିଏ କ'ଣ ମତେ ଦେବେ? ମାଗିଲେ ହାତରେ ଠେଙ୍ଗା, ବାଡ଼ି, ଛାଞ୍ଚୁଣି, କାଠ ଫାଳିଆ ଯାହା ପଡ଼ିଲା ସେଇଥିରେ ସେକିବେ!

ସୁମନ୍ତ: ଯା' କହ ବୋଉ! ମଦ ପିଇ ତତେ ନିର୍ଘାତ ପିଟିବା ଦେଖିଲେ ମୋର ମୁଣ୍ଡ ଗରମ ହେଇଯାଉଚି। ଏବେ ମତେ କୋଡ଼ିଏ ବର୍ଷ ହେଇଗଲାଣି। ଏଣିକି ମୁଁ ଆଉ ଛାଡ଼ିବିନି, ସିଏ ତତେ ମାରିଲେ ମୁଁ ବାପାକୁ ପିଟିବି, ତେଣିକି

ଯା'ହେଲେ ହବ !

(ଇଲିସି ଆଶ୍ଚର୍ଯ୍ୟ ହୋଇ ସୁମନ୍ତ ଉପରେ ଥରେ ବୁଲିଗଲେ)

ଇଲିସି: କ'ଣ କହିଲୁ ? ବବ୍‌ଲୁ, ତୁ... ବାପାକୁ ପିଟିବୁ ? ସିଏ ତୋର ଗୁରୁଜନ। ତତେ କେତେ କଷ୍ଟ କରି ଏତୁଟିଏରୁ ଏତୁଟିଏ କଲେ ଏବେ ତାଙ୍କ ଉପରକୁ ହାତ ଉଠେଇବୁ ?

ସୁମନ୍ତ: ହାତ ? (ହସିଲା) ମାଲ୍ ପିଇଥିବା ଲୋକକୁ ହାତ ମାଡ଼ କ'ଣ କାଟିବ ? ସିଏ ତତେ କାଠ ଫାଳିଆରେ ପିଟିବ ମୁଁ ହାତରେ ମାରିବି ? କାଠ ଫାଳିଆ ଗୋଟେ ଲୁଚେଇ ରଖିଚି କବାଟ କୋଣରେ !

ଇଲିସି: ସେଇଠୁ ? (ଭିତରୁ କାଠ ଫାଳିଆ ଧରି ଆସିଲେ)

ସୁମନ୍ତ: ମଦ କିଣିବାକୁ ତତେ ପଇସା ମାଗିବେ, ନଦେଲେ ବଜେଇବେ କାଠ ଫାଳିଆରେ। ଠିକ୍ ସେତିକିବେଳେ ବାପାର କାଠ ଫାଳିଆ ଧରିଥିବା ହାତଟାକୁ ଦେବି ଗୋଟେ ପାହାର !

ଇଲିସି: କିଏ ରେ ତୁ' ? କେଡ଼େ ସାହସ ତୋର ? ତୋ' ବାପାକୁ ବାଡ଼େଇବୁ ? କାଲି ତା'ହେଲେ ଅନ୍ଧାରଟାରେ ତୁ' ଏ କାଣ୍ଡ କରିଚୁ ?

ସୁମନ୍ତ: କ'ଣ କରନ୍ତି ଆଉ ? ତତେ ପିଟିଲେ ମୁଁ ସହି ପାରୁନି ଲୋ' ବୋଉ... ହାତ ଉଠିଯାଉଛି !

ଇଲିସି: ଚୁପ୍ କର ! ମଦ ପିଅନ୍ତୁ- ଯାହା କରନ୍ତୁ... ମୋର ଇହ ଓ ପର ଜୀବନର ଦେବତା ସିଏ ! ଆଗରୁ ମୋ' ବୋଉ ମୋ' ବାପାଙ୍କର ପାଦଧୂଆ ପାଣି ପିଉଥିଲା... ଆମ ଘରର ପରମ୍ପରା କ'ଣ... ତୁ' କ'ଣ ଜାଣିବୁ ? ତୁ ତା'ହେଲେ କାଲି ତାଙ୍କ ଉପରକୁ ହାତ ଉଠେଇଥିଲୁ ?

ସୁମନ୍ତ: ମାରିଚି ନା ମୁହଁଟାକୁ ବିଧା ଚାପୁଡ଼ା ମାରିମାରି ଇଣ୍ଡିଆ ମେପ୍ ବନେଇ ଦେଇଚି ବାପା ! ସେଇଟାକୁ ଦେବତା ବୋଲି କହୁଚୁ ? ଆଉ ମୁଁ... ତୋ ଉପରେ ହଉଥିବା ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରୁଚି ! ରହ ମୁଁ ବି ଦେଖୁଚି !

ଇଲିସି: କ'ଣ ଦେଖିବୁ ? ଏ ବାହାଡ଼ାଗୁଡ଼ା ଗାଁରେ ତୋ' ଭଳିଆ

ପୁଅ କା'ର ଅଛି ? ତୋର ମୁଣ୍ଡ ଖରାପ ହେଇଗଲାଣି ବବ୍‌ଲୁ !

ସୁମନ୍ତ: ମୁଣ୍ଡ ଖରାପ ହବନି ? ସେକେଣ୍ଡ କ୍ଲାସ ମାଟ୍ରିକ ! ପ୍ଲସ୍-ଟୁରେ ପାଠ ପଢ଼ିଥାନ୍ତି- ଟଙ୍କା ଅଢ଼େଇ ହଜାର ଦେଇପାରିଲାନି- କି ବାପା ସିଏ ? ମୁଁ ଏବେ କରେ କ'ଣ ?

ଇଲିସି: କୋଉଠୁ ଆଣିବେ ଅଢ଼େଇ ହଜାର ଟଙ୍କା ? ଗ୍ୟାସ କମ୍ପାନୀ ତ ଦରମା ଦଉଚି ଦି'ହଜାର... ଆଉ ଏ ସିଲେଇ ମେସିନ୍‌ରୁ ମୋର ବା କି ରୋଜଗାର ? ପରିବା ଖର୍ଚ୍ଚଟା ଯାହା ଉଠିଯାଉଚି। ସବୁଠୁ ଭଲ ହବ- ତୁ କୋଉଠି ଗୋଟେ ରୋଜଗାର ବାଟ ଦେଖେ।

ସୁମନ୍ତ: ମାଟ୍ରିକ୍ ପାଶ୍ କଲେ ଆଜିକାଲି କି ଚାକିରି ମିଳିବ କି ଲୋ ? ବିଏ/ ଏମ୍.ଏ. ପାଶ୍ କରି ଗଣ୍ଡା ଗଣ୍ଡା ବୁଲୁଚନ୍ତି ଚାକିରି ପାଇଁ !

ଇଲିସି: ବାପା ଆସନ୍ତୁ, ପଚାରିବି। କିନ୍ତୁ ସିଏ ତ ଖରାବେଳେ ଖାଇବା ପାଇଁ ବି ଆସୁନାହାନ୍ତି ଦି'ଦିନ ହେଲା।

ସୁମନ୍ତ: ଭଲ ହେଇଚି। ପିଇକି' ଆସି ପିଟିଥାନ୍ତା- ତୁ' ରକ୍ଷା ପାଇଗଲୁ !

(ହଠାତ୍ କଲିଂ ବେଲ୍ ବାଜିଲା- ଇଲିସି ବସି କ'ଣ ଗୋଟେ ସିଲେଇ କରୁଥିଲା। ସୁମନ୍ତ ଗଲା ଦୁଆର ଖୋଲିବାକୁ। ପ୍ରବେଶ କଲେ ଜଣେ ଗୁଣ୍ଡା ଶ୍ରେଣୀର ମଧ୍ୟବୟସ୍କ ଲୋକ। ନିଶାରେ ଟଳମଳ। ତାଙ୍କ ନାମ ପ୍ରତାପ ଜେନା।)

ସୁମନ୍ତ: ନମସ୍କାର ମଉସା ! ବାପା ନାହାନ୍ତି।

ପ୍ରତାପ ମଉସା: ଜାଣିଚି। ତୋ' ବାପା ଭାଟିରେ ନଥିଲା।

ସୁମନ୍ତ: ତମେ ପେଟେ ହବ ପିଇକି' ଚାଲି ଆସିଚଟି ଏ ଖରାବେଳଟାରେ ? ଧନ୍ୟ ତମ ଭାଟି... ଧନ୍ୟ ତମର ନିଶା... !

ପ୍ରତାପ: ବିଦ୍ୟାରାଣ ! ମୁଁ ଆଉ ଦିନବେଳା ପିଉନି।

ସୁମନ୍ତ: ପିଉନା କ'ଣ ? ଏଇ ପରା ପିଇକି ଝୁଲୁଚ ?

ପ୍ରତାପ: ବିଦ୍ୟାରାଣ ! ଜମାରୁ ଗୋଟେ ବୋତଲ !

ସୁମନ୍ତ: କେଡ଼େ ବଡ଼ ବୋତଲ କିହୋ ତମ ଭାଟିରେ ?

ପ୍ରତାପ: ଗୋଟେ ଲିଟର। ଖାଲି ପରମ୍ପରା ବଜାୟ ରଖିବା ପାଇଁ! ଏଇଟା ଖାଲି ପିଇବା କଥା, ବିଧାନକୁ।

ସୁମନ୍ତ: ବାପା କୁଆଡ଼େ ଗଲେ ? ଦି'ଦିନ ହେଲା ତାଙ୍କର ଦେଖାନାଇଁ କ'ଣ! ଅବଶ୍ୟ ଆମେ ଶାନ୍ତିରେ ଅଛୁ।

ପ୍ରତାପ: ଶାନ୍ତିରେ ଅଛୁ? ତା'ମାନେ ତୁ କିଛି ଜାଣିନୁ?

ସୁମନ୍ତ: କୋଉ କଥା ?

(ପ୍ରତାପ ସୁମନ୍ତକୁ ଠାରି ପାଖକୁ ଡାକିଲେ। ତା'ପରେ ତା' କାନ ପାଖରେ ବଡ଼ ପାଟିରେ କହିଲେ)

ପ୍ରତାପ: ବାପ ତୋର ଆଉ ଗୋଟେ ବାହା ହେଇ ଯାଇଚି।

ସୁମନ୍ତ: କୋଉଠି ?

ପ୍ରତାପ: ଏଇ... ଗୋପାଳପୁରରେ। ଏକାଦଶୀ ବେହେରାର ବିଧବା ଝିଅଟାକୁ। ଅନେକ ଦିନର ସମ୍ପର୍କ, ତୋ' ବାପା ତାଙ୍କ ଘରକୁ ପ୍ରାୟ ସବୁଦିନ ଯାଉଥିଲା।

(ପଛରେ ଷ୍ଟୁଲ୍ ଉପରେ ବସି ସିଲେଇ କରୁଥିବା ଇଲିସି ଧଡ଼୍ କରି ମୂର୍ଚ୍ଛା ହେଇ ତଳେ ପଡ଼ିଗଲା। ଆବହ ସଂଗୀତରେ କ୍ରାସ୍। ପଛକୁ ଚାହିଁଲା ସୁମନ୍ତ। ତା' ବୋଉର ଏ ଅବସ୍ଥା ଦେଖି ଦୌଡ଼ିଗଲା ପାଖକୁ। ପଛରେ ଟଳିଟଳି ମଉସା।)

ପ୍ରତାପ: କ'ଣ ହେଲା ?

ସୁମନ୍ତ: ବୋଉ !

(ଆଲୁଅ ଜଳିଲା)

# ତୃତୀୟ ଦୃଶ୍ୟ

ଆଲୋକ ଆସିଲା ମଦନ ଡାକୁଆର କେଶ କର୍ତ୍ତନାଳୟ ସାମ୍ନାରେ ପଡ଼ିଥିବା ବେଞ୍ଚ୍ ଉପରେ। ବିଜୁ ସେଇଠି ଗୋଟେ ବିଡ଼ିରେ ନିଆଁ ଧରେଇଲା। ପ୍ରବେଶ କଲା ସୁମନ୍ତ!

ସୁମନ୍ତ: ଶଳା ଏଇଠି ବସି ବିଡ଼ିଟା ଟାଣୁଛୁ? ମୁଣ୍ଡ ବୁଲୋଉନି?

ବିଜୁ: ଯେତେବେଳେ ଅଖାଡୁଆ ଅବସ୍ଥା ଆସି ତତେ ହଇରାଣ କରିବ ମାନେ ଜମାରୁ ସମାଧାନର ବାଟ ମିଳିବନି, ସେତେବେଳେ ଗୋଟେ ବିଡ଼ିରେ ନିଆଁ ଧରେଇବୁ! ଆଉ ବସିକି' ଟାଣିବୁ!

ସୁମନ୍ତ: ନାଇଁ ବେ! ସେ ଦିନ ତୋ' କଥାରେ ପଡ଼ି ଗୋଟେ ଟାଣିଥିଲି। ଜମାରୁ ଭଲ ଲାଗିଲାନି, ଖାଲି କାଶ ହେଲା। ତୁ ଶଳା ବିଡ଼ି ଟାଣି ଛତରାଙ୍କ ଭଳି ହଉଚୁ!

ବିଜୁ: ହେଃ! ଛତରା କ'ଣ? ଗଛ ମୂଳରେ ପାଣିଦେଲେ ଯେମିତି ଗଛ ବଢ଼େ...ମୁଣ୍ଡ ମୂଳରେ ଧୂଆଁ ଦେଲେ ସେମିତି ବୁଦ୍ଧି ବଢ଼େ।

ସୁମନ୍ତ: ମାନେ ?

ବିଜୁ: ଉଦାସ ହେଇଯାଇଥିବା ମୁଡ୍‌ଟା କଟିଯାଇ ମନଟା ଚେଙ୍ଗା ହେଇ ଉଠିବ ବେ’ ! ଏଇତକ କ’ଣ ବୁଝିପାରୁନୁ ? ଶଳା ତୋ’ ବାପ ଯୋଉ କାଣ୍ଡ କରିଚି ସେଥିରେ ତୋର ମନ ଖରାପ ହେଇ ଯାଇଚି। ନେ’- ଗୋଟେ ଟାଣ ଏଥିରୁ। (ସୁମନ୍ତ ଗୋଟେ ବିଡ଼ି ଟାଣିଲା- ଧୂଆଁ ଛାଡ଼ିଲା।) ବାସ୍ ବିଡ଼ି ଟାଣିବା ଠିକ୍ ଆସୁଚି। ଆସୁନି କ’ଣ ? ହୁଁ !

ସୁମନ୍ତ: ଲାଇଫ୍‌ର ଏଇଟା ସେକେଣ୍ଡ ବିଡ଼ି !

ବିଜୁ: ହୁଁ। ତା’ହେଲେ ସୁମନ୍ତ...କଥାଟା ହେଲା... ତୁ ଏଣିକି ହେଡ୍ ଅଫ୍ ଦ ଫେମିଲି। ଘର ଚଳେଇବା ଦାୟିତ୍ୱ ତୋ’ ମୁଣ୍ଡ ଉପରେ। କ’ଣ କରିବୁ ? ଶଳା ମାଟ୍ରିକ ପାଶ୍ କରି ତ ଘରେ ବସିଛୁ। କରିବୁ କ’ଣ ? ବାପା ତ ଫେରାର୍ ହେଇଗଲା।

ସୁମନ୍ତ: ଶଳା ଇଡ଼ିଅଟ୍ ଓଲ୍ଡ ମ୍ୟାନ୍ ପାଠ ପଢ଼େଇଲା ନାହିଁ। ଘରେ ବସିବିନି ଆଉ କ’ଣ କରିବି ? ମାଟ୍ରିକ୍ ପଢ଼ାରେ କି ଚାକିରି ? ଗଲେ ହବ...କୋଉ କଣ୍ଟ୍ରାକ୍ଟର ପାଖକୁ, ଇଟା, ସିମେଣ୍ଟ, ଲୁହାଛଡ଼ ହିସାବ ରଖିଲେ ଟଙ୍କା ପାଁଶ’ ଦବ।

ବିଜୁ: ଆ’...ମୋ’ ସାଙ୍ଗରେ ଆ’ ! ହାଇୱେ ଉପରେ କାମ ଚାଲିଚି। ଯିବା ସେ କଣ୍ଟ୍ରାକ୍ଟରକୁ ପଚାରିବା- ଚାଲ।

ସୁମନ୍ତ: ମଦନ...ମୁଁ ଖବରକାଗଜଟା ନଉଚି... ଘରେ ପଢ଼ିବ ବୋଉ- (ଖବରକାଗଜ ନେଲା। ବିଜୁ ସୁମନ୍ତକୁ ନେଇ ଚାଲିଗଲା। ଆଲୋକ କଟିଲା, ମଞ୍ଚ ଅନ୍ଧାର, ତତ୍‌କ୍ଷଣାତ୍ ଆଲୋକ ଆସିଲା। ନରି ସାହୁ ଚା’ ଦୋକାନ ଉପରେ। (ପ୍ରବେଶ କଲେ ପୀତାମ୍ବର କାନୁନ୍‌ଗୋ ବୟସ ୪୦)

ପୀତାମ୍ବର: ଦୋକାନୀ ! ବିନା ଚିନିର ଚା’ କପେ ମିଳିବ ? ବିନା ଚିନି !

ନରି: ଆଜ୍ଞା, ରଖିଚି ଅଲଗା କରି। ଦଉଚି, ହେଲେ ସାର୍ ! ଆପଣ ତ ଆମ ଗାଁର ନୁହନ୍ତି ! ମୁହଁଟା କିନ୍ତୁ କୋଉଠି ଦେଖିଲା ପରି ଲାଗୁଚି।

ପୀତାମ୍ବର: ମୁଁ ପୀତାମ୍ବର କାନୁନ୍‌ଗୋ’ ! ଗୁହାଳପଡ଼ାରୁ ଆସିଚି। ତମ ଗାଁର ବିଶ୍ୱାମିତ୍ର ମହାନ୍ତି ! ସିଏ ମୋର ଭିଣେଇ। ମୁଁ ଅନେକ

| | |
|---|---|
| | ଥର ତମ ଗାଁକୁ ଆସିଚି। |
| ନରି: | ହଁ ସାରେ! ମନେ ପଡ଼ିଲା। |
| ପୀତାମ୍ବର: | ମୁଁ ତାଙ୍କରି ଘରକୁ ଯାଉଚି! |
| ନରି: | ତାଙ୍କ ପୁଅଟା ଏଇଠି ବୁଲୁଥିଲା ସାର୍! ଆପଣ ତ ବିଶୁଆ ଘର ଦେଖିଚନ୍ତି...ନହେଲେ କା'କୁ ଗୋଟେ କହିଦେଲେ ଯାଇ ଘରଟା ଦେଖେଇ ଆସନ୍ତା! କିନ୍ତୁ ସାର୍! ତାଙ୍କ ଘର ଖବର ତ କିଛି ଭଲ ନୁହେଁ। |
| ପୀତାମ୍ବର: | ଭଲ ଆଉ କ'ଣ ହୁଅନ୍ତା? ଗ୍ୟାସ ସିଲିଣ୍ଡର ବାଣ୍ଟିବା କାମ... ଅବସ୍ଥା ସେତେ ଭଲ ନୁହେଁ। ଅଢ଼େଇ ହଜାର ଟଙ୍କା... ମୋ' ସାନ ଭଉଣୀଟା ସିଲେଇ ଜାଣିଥିଲା ବୋଲି ସାୟା, ବ୍ଲାଉଜ୍ ସିଲେଇ କରି ଘର ଖର୍ଚ୍ଚ ତୁଲୋଉଚି! |
| ନରି: | ନାଇଁ ସାର୍! ସେ କଥା ନୁହଁ! ଆମ ଗାଁ ଗୋହିରି ଆରପଟେ ଗୋପାଳପୁର ବୋଲି ଗୋଟେ ଛୋଟ ଗାଁ ଅଛି। ଗତକାଲି ସେଇ ଗାଁର ଗୋଟେ ବିଧବା ଝିଅକୁ ବାହା ହେଇପଡ଼ିଚି ବିଶିଆ- ଆମେ ସବୁ ଶୁଣିକି' କାବା! |
| ପୀତାମ୍ବର: | ମୋ' କାନରେ ବି କଥାଟା ପଡ଼ିଲା... ସତ କି ମିଛ ଜାଣିବା ପାଇଁ ଚାଲିଆସିଲି। |
| ନରି: | ଭାସିଗଲା ଆଜ୍ଞା! ବିଶ୍ୱାମିତ୍ରର ଯୋଉ ବୁଦ୍ଧି...ଘର ଭାସିଗଲା। ଜଲ୍‌ଦି ଯାଆନ୍ତୁ...ଆମେ ଠିକ୍ ଜାଣିଚୁ... ଆପଣଙ୍କ ସାନ ଭଉଣୀଟା କ'ଣ ଯେ କରୁଥିବ...! (ଶୀଘ୍ର ଚା' ପିଇ ପଇସା ଦେଇ ଚାଲିଗଲେ ପୀତାମ୍ବର।) |
| ନରି: | ଆରେ ମଦନ! ସେ ବିଶ୍ୱାମିତ୍ର ମହାନ୍ତି ପୁଅ ବସିଥିଲା- ଦାଢ଼ି ବନଉଚି ନା ଗଲାଣି? |
| ମଦନ: | ଗଲାଣି କେତେବେଳୁ, ଏଇଠୁ ଖବରକାଗଜଟା ନେଇ ପଳେଇଲା। |
| ନରି: | ଆସିଲେ କହିଦବୁ ତା' ବଡ଼ ମାମୁ ଆସିଚି। ହେଲା? |
| ମଦନା: | ଠିକ୍ ଅଛି। (ଆଲୁଅ ସ୍ତିମିତ ହୋଇ ମଞ୍ଚ ଅନ୍ଧକାର ହେଲା) |

# ଚତୁର୍ଥ ଦୃଶ୍ୟ

(କଳା ପରଦା ମଞ୍ଚରେ ଆଲୁଅ ଆସିଲା ବେଳକୁ ଇଲିସି ସିଲେଇ ମେସିନ୍ ଆଣି ମଞ୍ଚ ଉପରେ ରଖିଲା। ଷ୍ଟୁଲ୍ ଆଉ ଟେବୁଲ୍ ମଧ୍ୟ। ରଖୁରଖୁ ଭିତରେ ଥିବା ସୁମନ୍ତ ଉଦ୍ଦେଶ୍ୟରେ କହୁଥିଲା...)

ଇଲିସି: ବୁଝିଲୁ ବବ୍‌ଲୁ! ବବ୍‌ଲୁ! ତୁ' କ'ଣ କରୁଚୁ ଭିତରେ?

ସୁମନ୍ତ: (ଭିତରୁ) ଖବରକାଗଜଟା ପଢୁଚି! କ'ଣ କହୁଚୁ?

ଇଲିସି: ଆ' ଏଇଠିକି ଆ'!

(ସୁମନ୍ତ– ବବ୍‌ଲୁ ସିଲେଇ ମେସିନ୍ ଧରି ଟେବୁଲ ଉପରେ ରଖିଲା।)

ଇଲିସି: ଯା'ରେ ଅରକ୍ଷିତ ଡାକୁଆ ଘର ଆଡ଼େ ଟିକିଏ!

ସୁମନ୍ତ: ସେଇଟା କ'ଣ ଘରେ ରହେ? ସବୁବେଳେ ଭୁବନେଶ୍ୱର!

ଇଲିସି: ଭୋବିନିଶର ମନ୍ତ୍ରୀ, ଅଫିସର ସମସ୍ତେ ତାର ଚିହ୍ନା, ସିଏ କହିଲେ ଚକିରି ଖଣ୍ଡେ ହେଇଯିବ, ଟଙ୍କା ଦି' ହଜାର ମିଳିଲେ ଆମର କାହିଁରେ କ'ଣ!

ସୁମନ୍ତ: ଯିବି ଯେ- ମୋର ତ କ୍ୱାଲିଫିକେସନ୍ ମାଟ୍ରିକ! ଭୁବନେଶ୍ୱରରେ ସମସ୍ତେ ବି.ଏ./ ଏମ୍.ଏ। ବିଏ ପାଶ୍ କରି ସେଇଠି ପିଅନ ଚାକିରି କରୁଛନ୍ତି- ମୁଁ କ'ଣ କରିବି?

(ଭିତରକୁ ଚାଲିଗଲା)

ଇଲିସି: ମୁଁ କ'ଣ କରିବି? ପାଣି ଭଡ଼ା, ଇଲେକ୍‌ଟ୍ରିକ୍ ଭଡ଼ା, ସଉଦା ଖର୍ଚ୍ଚ କୋଉଠୁ ଆସିବ? ବୋପା ତ ଆଉ ଗୋଟେ ବାହା ହେଇ ଆମକୁ ଛାରଖାର କରିଦେଲା। ସିଲେଇ ଫିଲେଇରୁ ଦି'ପଇସା ମିଳିଲେ ଶାଗମାଛ ଖର୍ଚ୍ଚ ଉଠୁଥିଲା। ଏବେ ଚାଉଳ କିଣିବି କୋଉଠୁ? ଆଜି ଯିବି ସାମନ୍ତରା ଘରକୁ। ତାଙ୍କର ଗୋଟେ ରୋଷେଇବାଲୀ ଖୋଜୁଥିଲେ। ଯଦି ମତେ ରଖି ଦିଅନ୍ତେ ମୋର ଖାଇବା ଖର୍ଚ୍ଚ ଯାଇ ତିନି ହଜାର ଦରମା ମିଳନ୍ତା।

(ସୁମନ୍ତ ଭିତରୁ ଆସି, ଖୁସି ହେଇ)

ସୁମନ୍ତ: ବଢ଼ିଆ ହବ! ତୁ' ଆଜି ଯାଇ ସାମନ୍ତରା ମଉସା ଘରେ ରୋଷେଇ କରିଦେଇ ଆସେ। ସନ୍ତୁଳା କରିବୁ ଆଉ ନବରତ୍ନ ଘାଣ୍ଟ ତରକାରୀ, ତୋ' ହାତରେ ଯେମିତି ସୁଆଦିଆ ରୋଷେଇ- ଥରେ ଖାଇଲେ ତାଙ୍କ ଘରେ ତତେ ପାଞ୍ଚ ହଜାର ଦେଇକି ରଖିବେ। ଏ ସିଲେଇ ବଡ଼ ବେକାରିଆ ଧନ୍ଦା। ମତେ ହିଁ ଆଣିବାକୁ ପଡୁଚି- ପ୍ରଥମେ ଟେବୁଲ୍... ତା'ପରେ ଷ୍ଟୁଲ୍ ଆଉ ତା'ପରେ ସିଲେଇ ମେସିନ୍!

(ସୁମନ୍ତ ଏଇତକ କହି ଭିତରକୁ ଚାଲିଗଲା। ଇଲିସି ତା' ଉପରେ ବିରକ୍ତ ହେଲେ)

ଇଲିସି: ହେଃ! ହାତରେ ଖଡ଼ା ସିଝିବନି- କାଇଁକି ବକବକ ହଉଚୁ? ତୋ' ମା' ଯାଇ ଆଉ ଜଣକ ଘରେ ଚାକରାଣୀ ହେଇ ରୋଷେଇ କରିବ- ତତେ ଭଲ ଲାଗିବ? ବୋପା ଗୋଟେ ବିଧବା ଟୋକି ଧରି ମଉଜ କରୁଚି...ଆଉ ତୁ'ଟା... ମୋର ଗୋଟେ ବୋଲି ୨୨ବର୍ଷର ପୁଅ...ମତେ ପରଘରେ ରୋଷେୟାଣୀ କରିଦଉଚୁ? କାହାକୁ ନିନ୍ଦିବି? ଭାଗ୍ୟକୁ? (କାନ୍ଦକାନ୍ଦ ହୋଇ) ବାପାବୋଉ ଚାଲିଗଲା ପରେ ବଡ଼ଭାଇ

| | |
|---|---|
| | ଏଇ ମଦୁଆଟା ସାଙ୍ଗରେ ମତେ ଖଞ୍ଜି ଦେଇଥିଲେ । (ଆବହ ସଂଗୀତ କରୁଣ) ତମେ କୋଉଠି ଅଛ ଭାଇ ? ତମ ଭିଣେଇ ମତେ ଛାଡ଼ି ଗୋଟେ ଭଣ୍ଡାରୁଣୀ ଟୋକି ବାହା ହେଇପଡ଼ିଲା... ମୁଁ ଏବେ କ'ଣ କରିବି ଲୋ ବୋଉ ? ନା ଏ କୂଳକୁ ହେଲି ନା ସେ କୂଳକୁ। କ'ଣ କରିବି ମୁଁ... (କାନ୍ଦିଲେ ବଡ଼ ପାଟିରେ। ଦାଣ୍ଡଦୁଆର ମେଲା। ଘର ଭିତରକୁ ପଶି ଆସିଲେ ପୀତାମ୍ବର କାନୁନ୍‌ଗୋ', ହାତରେ ଗୋଟେ ପରିବାଭର୍ତ୍ତି ବ୍ୟାଗ୍) । |
| ପୀତାମ୍ବର: | ମା ଇଲିସି ! |
| ଇଲିସି: | (ଭାଇକୁ ଦେଇ କାଗଜରେ ଫାଟି ପଡ଼ିଲା ଓ ଭାଇ ଉପରକୁ ଦୌଡ଼ି ଆସି ଅଜାଡ଼ି ହେଇପଡ଼ି ଜୋର୍‌ରେ କାନ୍ଦିଲା) |
| ପୀତାମ୍ବର: | କ'ଣ କରିବା ମା' ? ମୁଁ ଶୁଣିଲି ସବୁକଥା। ବ୍ୟସ୍ତ ହେଇ ଦୌଡ଼ି ଆସିଲି। ତା'ମାନେ ମୁଁ ଯାହା ଶୁଣିଲି ସବୁ ସତ ? |
| ଇଲିସି: | ପାଞ୍ଚଦିନ ହେଲା ଘରକୁ ଆସିନି ମଦୁଆ, ଚଉଦ ସରିଗଲାଣି। |
| ପୀତାମ୍ବର: | ଗାଁ ମୁଣ୍ଡ ଚ' ଦୋକାନୀ ପାଖରୁ ସବୁ ଶୁଣିଲି। ବିଶ୍ୱାମିତ୍ର ଶେଷରେ ଏୟା କରିବ ବୋଲି ଭାବିନଥିଲି ! ମଦ ପିଇ କାଣ୍ଡଜ୍ଞାନ ହରାଇ ବସିଲାଣି ! |
| ଇଲିସି: | ନିଶା ତ ସମସ୍ତେ କରୁଛନ୍ତି ଭାଇ ! ତା' ବୋଲି ଏମିତି କାଣ୍ଡ ! |
| ପୀତାମ୍ବର: | ଶୁଣିଲି ସେ ଝିଅଟା ଗୋପାଳପୁରର, ବିଶ୍ୱାମିତ୍ର ତା' ସାଙ୍ଗରେ ଦି' ବର୍ଷ ହେଲା ସମ୍ପର୍କ ରଖିଚି। |
| ଇଲିସି: | ପଚାରି ଦବାକୁ ବି ଜୁ' ନାଇଁ ଭାଇ, କାଠ ଫାଳିଆରେ ଗୋଗଛିଆ ବାଡ଼ୋଉଚି...(କାନ୍ଦ) ମୋ' ଜୀବନ ନଷ୍ଟ ହେଇଗଲା ଭାଇ ! ଏବେ କୂଅକୁ ଡେଇଁ ଆତ୍ମହତ୍ୟା କରିବା ଛଡ଼ା ଅନ୍ୟ ଉପାୟ ନାହିଁ। |
| ପୀତାମ୍ବର: | (ସାନ୍ତ୍ୱନା ଦେଇ) ଛି ! ଆତ୍ମହତ୍ୟା କରିବୁ ଶେଷରେ ଏ ମଦୁଆ ବିଶ୍ୱାମିତ୍ର ପାଇଁ ? ଚାଲ ପଳେଇଯିବା ଘରକୁ ! |
| ଇଲିସି: | ନାଇଁ ଭାଇ ! ସେଇଠିକି ଗଲେ ଭାଉଜ ମତେ ବାଡ଼େଇବ। ତମେ ବରଂ ପୋଲିସ୍‌କୁ ଖବର ଦିଅ- ମୁଁ ଥାଉ ଥାଉ ଆଉ |

ଗୋଟେ ବାହାହେଲା କାଇଁକି ?

ପୀତାମ୍ବର: ପୋଲିସ୍ ? ରାମ୍ ରାମ୍ ରାମ୍... ପୋଲିସ୍ ନାଁ ଧରନା। ରିପୋର୍ଟଟା ରଖିବା ପାଇଁ ପାଞ୍ଚ ହଜାର ମାଗିବେ- ଶେଷକୁ ଆମେ ସର୍ବସ୍ୱାନ୍ତ ହେଇଯିବା ହେଲେ ବିଶ୍ୱାମିତ୍ରର କିଛି ହବନି ! ବବ୍‌ଲୁ ? ବବ୍‌ଲୁ କୁଆଡ଼େ ଗଲା ?

ଇଲିସି: ବବ୍‌ଲୁ ! ଦେଖିଲୁ, କିଏ ଆସିଛନ୍ତି... ଦେଖିବୁ ଆ' !

(ପ୍ରବେଶ କରି ନମସ୍କାର କଲା)

ସୁମନ୍ତ: ମାମୁ ନମସ୍କାର !

ପୀତାମ୍ବର: କିରେ ବବ୍‌ଲୁ ! ତୋ' ଖବର କ'ଣ ?

ସୁମନ୍ତ: ଖବର ଆଉ କ'ଣ ମାମୁ ? ମାଟ୍ରିକ୍ ପାଶ୍ କରି ଘରେ ବସିଚି। କଲେଜରେ ପଢ଼ିବା ପାଇଁ ପଇସା ନାହିଁ। ବୋଉ କହୁଚି ଚାକିରି କର। କି ଚାକିରି କରିବି ମାଟ୍ରିକ୍ ପାଠରେ ?

ଇଲିସି: ବାପା ତ ଦରମା ପଇସାଟା ମଦ ଭାଟିରେ ଦେଇ ଦଉଚି। ଶେଷକୁ ଏବେ ଗୋପାଳପୁରରେ ଘର କରି ରହିବ। ୟା'କୁ ବାଇଶି ବର୍ଷ ହେଲାଣି... କୋଉଠୁ ଦି' ପଇସା ରୋଜଗାର ନକଲେ ଘର ଚଳିବ କେମିତି ?

ସୁମନ୍ତ: ଗାଁରେ କି ଚାକିରି ମିଳିବ କହୁନା ମାମୁ ?

ପୀତାମ୍ବର: ତୁ' ୟା'କୁ ମୋ ସାଙ୍ଗରେ ଛାଡ଼ିଦେ' ଇଲିସି। ବାବ୍‌ଲୁକୁ ମୁଁ ଘରକୁ ନେଇ ଯାଉଚି। ମୋର ଗୋଟେ ସାଙ୍ଗ ଆମ ଗାଁ ମୁଣ୍ଡରେ ଧାନକଳ ବସେଇଚି। ତାକୁ କହି ସେଇଠି ଗୁମାସ୍ତା କରେଇ ଦେବି।

ସୁମନ୍ତ: ଯିବି ? ମାମୁ ଘରକୁ ଯିବି ବୋଉ ?

ଇଲିସି: ମୁଁ କହୁଥିଲି ସେ ଖୋକାର ପ୍ଲସ୍-ଟୁ' ବହିଯାକ ଆଣି ପଢ଼- ପ୍ଲସ୍-ଟୁ' ପରୀକ୍ଷାଟା ଦେଇ ଦେ' !

ପୀତାମ୍ବର: ପ୍ଲସ୍-ଟୁ' ପରୀକ୍ଷା ଆହୁରି ଦି' ମାସ ଅଛି। ଏବେ ଚାକିରିଟା ଖାଲି ଅଛି। ଦି' ମାସ ପରେ କ'ଣ ହବ କିଏ କହିବ ? ସୁଯୋଗ ତମ ପାଇଁ ଅପେକ୍ଷା କରିବନି ! ଗହଣା ଦୋକାନରେ ହିସାବ ରଖିବା ଚାକିରି ନହେଲେ ବିଲ୍‌ଡ଼ର୍ ପାଖରେ ମ୍ୟାନେଜର ! ଏଗୁଡ଼ା କ'ଣ ସହଜରେ ମିଳେ ?

ଚାଲ- ଏବେ ଚାଲ, ମୋ' ସାଙ୍ଗରେ- ଲୁଗାପଟା ଦିଇଟା ଗୋଟେ ବ୍ୟାଗ୍‌ରେ ଭର୍ତ୍ତି କରି ଚାଲ।

ଇଲିସି: କ'ଣ ବାହାରୁ ବାହାରୁ ଚାଲିଯିବ! ଖାଇପିଇ ଉପରଓଳି ବାହାରିବ ଆସ!

(ଇଲିସି, ପୀତାମ୍ବର ଓ ବବ୍‌ଲୁ ଭିତରକୁ ଗଲେ)

# ଚତୁର୍ଥ ଦୃଶ୍ୟ

ଆଲୁଅ ଜଳିଲା ପୀତାମ୍ବର କାନୁନ୍‌ଗୋଙ୍କ ଘରେ। ଗୋଟେ କାଠ ଷ୍ଟୁଲ ଆଣି ଧଡ଼୍ କରି ରଖିଲେ ଏବଂ ବିରକ୍ତି ମିଶା ସ୍ୱରରେ କହିଲେ ପୀତାମ୍ବରଙ୍କ ପତ୍ନୀ ସୁକୁମାରୀ।

ସୁକୁମାରୀ: ବସ୍! ଏ ଷ୍ଟୁଲ୍ ଉପରେ ବସ୍! ବାବ୍‌ଲୁ? କୁଆଡ଼େ ଗଲୁ?
(ବବ୍‌ଲୁ ଗୋଟେ ବଡ଼ ବ୍ୟାଗ୍ ଧରି ପ୍ରବେଶ କଲା)
ଆମ ଘରେ ଚୌକି ନାଇଁ। ସବୁ ପ୍ଲାଷ୍ଟିକ୍ ଚୌକି ଭାଙ୍ଗିଗଲା। ଆଉ ଗୋଟେ ଅଛି- ସେଇଟା ଯୋଉ ଦାଣ୍ଡଘରେ ପଡ଼ିଚି। ଘରକୁ ଗେଷ୍ଟ୍ ଆସିଲେ ସେଇଠି ବସିବେ, ତୁ' ବସିବୁ ନାଇଁ!

ବବ୍‌ଲୁ: ମାମୁଙ୍କୁ କହୁନ... ନୂଆ ଚୌକି ଦି' ଚରିଟା କିଣିବେ!

ସୁକୁମାରୀ: ହୁଁଃ, ମାମୁ! ତୋ' ମାମୁ ମୁଣ୍ଡରେ କ'ଣ ସେ ବୁଦ୍ଧି ଅଛି? ଘର କିମିତି ଚଳୁଚି ସେ କଥା କ'ଣ ସେ ଲୋକଟା କିଛି ଜାଣେ? ତୋ' ମାମୁ କୁଆଡ଼େ ଯାଏ... କୁଆଡ଼େ ଆସେ...

ତାର କ'ଣ କିଛି ଠିକଣା ଅଛି ? ସକାଳୁ କୁଆଡ଼େ କାହାକୁ ନକହି ତମ ଗାଁକୁ ଚାଲିଗଲା ଆଉ ତତେ ନେଇ ଚାଲି ଆସିଲା । ଏଇନେ ତୋ' କଥା କିଏ ବୁଝିବ ଏଇଠି ? ମୋର ତ ଆଣ୍ଠୁଗଣ୍ଠି ବାତ...ଠିଆହେଇ କାମ କରିବାକୁ ପଡୁଚି ବୋଲି ଗୋଟେ କାମବାଲୀ କିଣିଚି ତିନି ହଜାର ଦେଇ । ସିଏ କ'ଣ ତୋ' କଥା ବୁଝିବ ନା ବୁଝିଲେ କଥାଟା ସୁନ୍ଦର ଦିଶିବ ?

ବବ୍‌ଲୁ: ମୁଁ ମନା କରୁଥିଲି ! ମାମୁ ବାଧ କରି ନେଇ ଆସିଲେ !

ସୁକୁମାରୀ: ଆହା ହା ହା ! ଭଣଜା ସୁଆଗ ଝରି ପଡୁଚି । ନିଜର ପୁଅଟା ପଛେ ଚାରି ବର୍ଷ ହେଲା ମାଟ୍ରିକ୍ ପାଶ୍ କରିପାରୁନି । ତା' କଥା ବୁଝିବାକୁ ନାଇଁ- ଭଣଜାକୁ ଧରି ଚାଲିଆସିଲେ ! ଲୋକଟାର କେବେ ଆଉ ବୁଦ୍ଧିଶୁଦ୍ଧି ହେବ କେଜାଣି ? ଗୋବର ! ମୁଣ୍ଡ ଭିତରେ ଗୋବର ! ଛିଃ ! ଏ ଘରେ ଚଳିବା ମୁସ୍‌କିଲ୍ ହେଇଗଲାଣି !

(ପ୍ରବେଶ କଲା ଘରର କାମବାଲୀ ବିଉଟି ମହାନ୍ତି)

ବବ୍‌ଲୁ: ଖୋକା ଭାଇ ଚାରିବର୍ଷ ହେଲା ମାଟ୍ରିକ୍ ପାଶ୍ କରିନି ? ମୁଁ ଭାବିଲି କଲେଜରେ ପଢୁଚି । ପାଶ୍ କାଇଁକି କରୁନି ?

ସୁକୁମାରୀ: ସବୁ ସେଇ ବାଡ଼ିପଡ଼ା ମାଷ୍ଟର ମାନଙ୍କ ଯୋଗୁଁ । ପ୍ରତିବର୍ଷ ଦରମା ବଢୁଚି- ଖାତା ଦେଖା ପଇସା ବଢୁଚି...ପୁଅର ଖାତାଟା ଠିକ୍ ଭାବରେ ଦେଖିପାରୁନାହାନ୍ତି- ପଚାଶ ଜାଗାରେ ୦୫ ମାର୍କ ଦେଇ ଖୋକାକୁ ଆମର ଫେଲ୍ କରୁଛନ୍ତି ଚାରିବର୍ଷ ହେଲା । ହେ ମା' ଖରାଖାଇ ! ଏ ମାଷ୍ଟ୍ରମାନଙ୍କ ବଂଶ ଲୋପ ପାଇଯାଉ ।

(୧୫/୧୬ ବର୍ଷର ଗୋଟେ ସୁନ୍ଦରୀ କାମବାଲୀ ଗୋଟେ କାଗଜ ପ୍ଲେଟ୍‌ରେ କିଛି ଗାଣ୍ଠିଆ ଓ ଗୋଟେ ଛୋଟ ରସଗୋଲା ଆଣି ଦେଲା ବାବ୍‌ଲୁକୁ । ବାବ୍‌ଲୁ ତାକୁ ଚିହ୍ନି ନପାରି ବଲ ବଲ କରି ଚାହିଁଲା)

ବବ୍‌ଲୁ: ଏଇଟା ତ ଅନ୍ତରା ନାନା ନୁହେଁ।

ସୁକୁମାରୀ: ଅନ୍ତରା ଘରଛାଡ଼ି ଗୋଟେ ଭଣ୍ଡାରୀ ଟୋକା ସାଙ୍ଗରେ ପଳେଇଲା ।

ବବ୍‌ଲୁ: କୁଆଡ଼େ ?

ସୁକୁମାରୀ: ସୁରତ ପଳେଇଲା- ଗୁଜୁରାଟ।

ବବ୍‌ଲୁ: ଆଉ ଏଇ ଝିଅଟା ?

ସୁକୁମାରୀ: କାମବାଲୀ ! ଏଇଟାକୁ ତିନିଲକ୍ଷ ଦେଇ କିଣିଛି। ବଉଦ ଜିଲ୍ଲା ମନମୁଣ୍ଡା ବୋଲି ଗୋଟେ ଗାଁରେ ତା'ର ଘର।

ବବ୍‌ଲୁ: ଏଇଟାର ଠିକଣା ପାଇଲ କେମିତି? ମାମୁ କ'ଣ ବଉଦ ଯାଇଥିଲେ ?

ସୁକୁମାରୀ: ଆରେ ଦୂର୍ ! ମାମୁ ହାତରେ ତୋର ଖଡ଼ା ସିଝିବନି। କାମବାଲୀଟାକୁ କିଣିବା ପାଇଁ ମନା କରୁଥିଲେ। ମୁଁ ପାଞ୍ଚ/ ଦଶ ହଜାର କରି ଯୋଉ ତିନି ଲକ୍ଷ ଜମା କରିଥିଲି ସେଇ ପଇସାରେ କିଣିଲି। ଖବର ଦେଇଥିଲି ମୋର ପିଇସି ପୁଅଭାଇ ହାତରେ। ସିଏ ବଉଦରେ ପୋଲିସ୍ ଏ.ଏସ୍.ଆଇ. ଅଛି। ସିଏ ଯୋଗାଡ଼ କରିଦେଲା। ୟା' ବାପା ବିପିନ ମହାନ୍ତି ଆମ କଟକ ବାଲିକୁଦାର ଲୋକ; ସେଇଠି କାମ କରୁ କରୁ ମନମୁଣ୍ଡାରେ ଘର କରି ରହିଯାଇଥିଲେ। ଦେଖିଲି ଆମ ଖଣ୍ଡେଇତ ଘର ଝିଅ ତ କିଣିକି ନେଇ ଆସିଲି। ୟା' ଲାଗି ତୋ' ମାମୁ ସାଙ୍ଗରେ ଡେଲି ଗଣ୍ଡଗୋଳ ! ନେ' ଖାଇନେ' ଜଳଖିଆ- ଏତେ ବାଟରୁ ଆସିଚୁ।

(ସୁକୁମାରୀ ଭିତରକୁ ଚାଲିଗଲେ। ବାହାରୁ ପ୍ରବେଶ କଲା ଖୋକା। ଗୋଟେ ଲମ୍ବା ବରମୁଡ଼ା ପିନ୍ଧିଛି ଓ ଦାଢ଼ି ରଖିଚି। ପ୍ରବେଶ କରି ବବ୍‌ଲୁକୁ ଦେଖି)

ଖୋକା: ଆରେ ଶଳା, ତୁ କେତେବେଳେ ଆଇଲୁ ? ବାପା ସାଙ୍ଗରେ ?

(ବାବ୍‌ଲୁ ଠିଆ ହେଇପଡ଼ିଲା। ମୁଣ୍ଡ ହଲାଇଲା)

ବବ୍‌ଲୁ: ଖୋକା ଭାଇ ନମସ୍କାର !

ଖୋକା: ନମସ୍କାର ! ବୁଢ଼ାଟିଏ ହେଇଥା'- (ବାବ୍‌ଲୁର କାନ ପାଖକୁ ଚାପୁଡ଼ାଏ ମାରି) ଆସୁ ଆସୁ ଶଳା ଗେଫୁଛି...। (ପ୍ଲେଟ୍‌ରୁ ରସଗୋଲାଟା ନେଇ ପାଟିରେ ପକେଇ ଦେଲା) ଘରେ ଆମର ଏମର୍‌ଜେନ୍‌ସୀ ଚାଲିଛି। ଦି'ଦିନ ହେଲା

ରୋଷେଇ ବନ୍ଦ।

ବବ୍ଲୁ: କାଇଁକି ?

ଖୋକା: ଅନ୍ତରା ନାନା ଘର ଛାଡ଼ି ପଳେଇଲା। ସେଇ ଦୁଃଖରେ ଘରେ ରୋଷେଇ ବନ୍ଦ। ତୁ' ଖାଇବୁ କ'ଣ ! କାଇଁକି ଆସିଲୁ ଶଳା ଆମ ଘରକୁ ? (ବଡ଼ ପାଟିରେ) ମା' ! ବାପାକୁ ପଚାରିଲୁ ଏଇଟାକୁ କାଇଁକି ନେଇକି ଆସିଲେ ! ଶଳା-ଶେଯ ମୁତୁରାଟେ !

ବବ୍ଲୁ: ନାଇଁ ଖୋକାଭାଇ ! ମୁଁ ଆଉ ଶେଯରେ ମୁତୁନି।

ଖୋକା: ଦି'ଦିନ ଗଲେ ଜଣାପଡ଼ିବ ! (ପୁଣି ଗୋଟେ ଚପୁଡ଼ା ମାରିଲା) ଦେଖାଯିବ ତୁ କ'ଣ କରୁଚୁ ! (ଚାଲିଲା ଭିତରକୁ) (ଭିତରୁ ଗୋଟାଏ ଗ୍ଲାସ୍‌ରେ ପାଣି ନେଇ ଆସିଲା କାମବାଲୀ-ବିୟୁଟି ପାଣିଟା ବଢ଼େଇ ଦେଇ)

ବିୟୁଟି: ଖାଇ ସାରିଲ ? କାଇଁ- ପ୍ଲେଟ୍‌ଟା କାଇଁ ? ଏ ହେ ହେ-ଜଳଖିଆ ପ୍ଲେଟ୍ ଇଆଡ଼େ ସିଆଡ଼େ ଫୋପାଡ଼ିବ ନାଇଁ ବାବୁ ! ମା' ପିଟିବେ ! ନିଅ- ପାଣି ନିଅ।

ବବ୍ଲୁ: (ପାଣି ନେଇ ପିଇଲା)

ବିୟୁଟି: ତମ ନାଁ କ'ଣ ?

ବବ୍ଲୁ: ବବୁଲ୍ ! ତୋ' ନାଁ କ'ଣ ?

ବିୟୁଟି: ମୋ' ନା ବିୟୁଟି ମହାନ୍ତି !

ବବ୍ଲୁ: ଆରେ ବାଃ ! ବିଉଟିଫୁଲ୍ !

(ବାହାରୁ କଲିଂ ବେଲ୍ ଶୁଭିଲା। ବିୟୁଟି ଯାଇ କବାଟ ଖୋଲିଲା। ପ୍ରବେଶ କଲେ ଜଣେ ପୋଲିସ୍ ଏ.ଏସ୍.ଆଇ। କନେଷ୍ଟବଲରୁ ପ୍ରମୋସନ୍ ପାଇଛନ୍ତି। ବୟସ ୪୫ରୁ ୫୦ ଭିତରେ)

ଏ.ଏସ୍.ଆଇ: ପୀତାମ୍ବର କାନୁନ୍‌ଗୋ'ଙ୍କୁ ଡାକିଲେ !

ବବ୍ଲୁ: (ବଡ଼ ପାଟିରେ) ମାଇଁ ! ପୋଲିସ୍ ଡାକୁଚି !

(ପ୍ରବେଶ କଲେ ସୁକୁମାରୀ ଏବଂ ପୋଲିସ୍ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ।)

ସୁକୁମାରୀ: ଆଜ୍ଞା ନମସ୍କାର ! ବାବୁ ବଜାରକୁ ଯାଇଚନ୍ତି। କ'ଣ କାମ

ଥିଲା ?

ଏ.ଏସ୍.ଆଇ: ଆପଣଙ୍କ ଝିଅ ଅନ୍ତରା... ?

ସୁକୁମାରୀ: କୋଉଠି ଅଛି ହତଭାଗୀ ? ବତିଶି ବର୍ଷ ହୋଇଯାଇଥିଲା। ଜାଣିପାରିଲା କାନୁନ୍‌ଗୋ’ ବାବୁ ତାକୁ ବାହା ଦେଇପାରିବେ ନାଇଁ। ସେଇଥିପାଇଁ ବିଚାରୀ ରାତି ଅଧିଆ ଘରଛାଡ଼ି ଚାଲିଗଲା।

ଏ.ଏସ୍.ଆଇ: ଆମେ ଚାରିଆଡ଼େ ଖବର ପଠେଇଥିଲୁ। ଜଣାପଡ଼ିଲା ସିଏ ସୁରତ ଯାଇନାହିଁ। ବରୋଦାରେ ଅଛି। ତା ବର ଅବିନାଶ ବେହେରା ସାରାଭାଇ କମ୍ପାନୀରେ ଫାର୍ମାସିଷ୍ଟ ଅଛି। ଆଉ ଆପଣଙ୍କ ଝିଅ ଅନ୍ତରା, ସିଏ ବି ସାରାଭାଇ କମ୍ପାନୀ ଅଫିସରେ ଚାକିରି ପାଇଲାଣି। ଦୁହେଁ ଭଲରେ ଅଛନ୍ତି... !

ସୁକୁମାରୀ: ହେ ମା’ ଖରାଖାଇ ! ମୋ’ ଝୁଅକୁ ଭଲରେ ରଖି ଥା’ ମା’ ! ଦଶହରାକୁ ମୁଁ କୁକୁଡ଼ା ବଳି ଦେବି। (ହୁଳହୁଳି ପକେଇଲେ।) ଆପଣ ବସନ୍ତୁ। ମୁଁ ଜଳଖିଆ ଆଣୁଚି ଆପଣଙ୍କ ପାଇଁ। (ସୁକୁମାରୀ ଚାଲିଗଲେ। ଏ.ଏସ୍.ଆଇ. ବାବ୍‌ଲୁକୁ ଚାହିଁଲେ। ବାବ୍‌ଲୁ ଠିଆ ହେଇଯାଇ ଷ୍ଟୁଲ୍‌ଟା ପକେଇ ଦେଲା ଏ.ଏସ୍.ଆଇ.ଙ୍କ ପାଇଁ)

ବବ୍‌ଲୁ: ଅନ୍ତରା ନାନାଟା ମୋର... ବହୁତ ଭଲ ପିଲା... ମତେ ମାଛମଞ୍ଜି ଭଜା ଖୁଆଏ ! ହେଲେ ଖୋକା ଭାଇଟା ଦୁଷ୍ଟ। ଖାଲି ବାଡ଼ୋଉଚି ମତେ।

ଏ.ଏସ୍.ଆଇ: ତମେ କିଏ ?

ବବ୍‌ଲୁ: ମୁଁ ବାବ୍‌ଲୁ ! ପୀତାମ୍ବର କାନୁନ୍‌ଗୋ ମୋର ବଡ଼ ମାମୁ ! ମୁଁ ଏଇଠି ରାଇସ୍ ମିଲ୍‌ରେ କ୍ଲର୍କ ଅଛି।

ଏ.ଏସ୍.ଆଇ: ଓ ! ଆଛା ଆଛା... !
(ବିସ୍କୁଟି ପ୍ଲେଟ୍‌ରେ ଜଳଖିଆ ଆଣି ଦେଲା ଏ.ଏସ୍.ଆଇ. ବାବୁଙ୍କୁ। ଏ.ଏସ୍,ଆଇ ବାବୁ ଖାଇଲେ ଓ ବାବ୍‌ଲୁ ମଞ୍ଚ ଉପରେ ପଦଚାରଣା କଲା। ତା’ପରେ ପଚାରିଲା)

ବବ୍‌ଲୁ: ଆଛା ଥାନାବାବୁ ! ଆପଣ ଖାଲି ହଜି ଯାଇଥିବା ଝିଅମାନଙ୍କୁ ଖୋଜନ୍ତି ନା ପୁଅମାନଙ୍କୁ ମଧ୍ୟ ?

ଏ.ଏସ୍.ଆଇ: ସମସ୍ତଙ୍କୁ। କାଇଁକି ?

ବବ୍‌ଲୁ: ମାସେ ହେଲା ମୋ’ ବାପା ହଜି ଯାଇଛନ୍ତି !

ଏ.ଏସ୍.ଆଇ: କିଏ ତମ ବାପା ? କୋଉ ଗାଁ ତମର ?

ବବ୍‌ଲୁ: ଆଜ୍ଞା, ଆମ ଗାଁ ବାହାଡ଼ାଗୁଡ଼ା।

ଏ.ଏସ୍.ଆଇ: ଆରେ, ବାହାଡ଼ାଗୁଡ଼ା ? ମୁଁ ସମସ୍ତଙ୍କୁ ଚିହ୍ନିଚି ସେ ଗାଁରେ ! କିଏ ତମ ବାପା ?

ବବ୍‌ଲୁ: ଆଜ୍ଞା ବିଶ୍ୱାମିତ୍ର ମହାନ୍ତି। ଗ୍ୟାସ୍ ସିଲିଣ୍ଡର ଦିଅନ୍ତି।

ଏ.ଏସ୍.ଆଇ: ଓ ! ସେ ମଦୁଆ ? ସେଇଟା ହଜି ଯାଇଚି ? ଗୋଟେ ଏଫ୍.ଆଇ.ଆର୍ ଲେଖିକି ଦିଅ।

ବବ୍‌ଲୁ: ସେଥିରେ କ’ଣ ଲେଖା ହବ ? ଆକ୍‌ଚୁଆଲି, ମୋ’ ବାପା ହଜି ନାହାନ୍ତି। ଗୋପାଳପୁର ଏକାଦଶୀ ବେହେରା...ୱାର୍ଡ଼ ମେମ୍ବର ହେଇଚି... ତା’ର ବିଧବା ଝିଅଟାକୁ ପୁଣି ଥରେ ବାହାହେଇ ପଡ଼ିଚି।

ଏ.ଏସ୍.ଆଇ: ତମେ ଏ ଘଟଣାଟା ଲେଖିକି ଦିଅ- ଦି’ ଦିନରେ ବିଶିଆ ଘରକୁ ଫେରିବ। ହେଲେ ଗୋଟେ ଏଫ୍.ଆଇ.ଆର୍. ଦର୍‌କାର୍। ହେଲା... ? ହଉ, ମୁଁ ଯାଉଚି। ଥାନାରେ ଦେଖା ହବ ! (ଏ.ଏସ୍.ଆଇ. ଚାଲିଗଲା ପରେ ଚା’ ନେଇ ପ୍ରବେଶ କଲା ବିୟୁଟି)

ବିୟୁଟି: ଏ ମା’ ! ପୋଲିସ୍ ବାବୁ ଚାଲିଗଲେ ?

ବବ୍‌ଲୁ: ତୁ’ ଏତେ ଡେରି କ’ଣ କଲୁ ?

ବିୟୁଟି: ତମେ ପିଇଦିଅ !

ବାବ୍‌ଲୁ: ହେଃ ! ମୁଁ କ’ଣ ଚା’ ପିଏ ? ମୁଁ ପଖାଳ ଭାତ, ବାଇଗଣ ପୋଡ଼ା ଖାଏ... ଯୋଉ ଦିନ ଭାଗ୍ୟ ଭଲ ଥିବ... ସେଦିନ ପଖାଳ ସାଙ୍ଗରେ ଆଳୁ ଭରତା।

ବିୟୁଟି: ମୁଁ... ବଢ଼ିଆ ସନ୍ତୁଳା କରେ। ଫୁଲବଡ଼ି ପକାଏ।

ବବ୍‌ଲୁ: ତା’ହେଲେ ମୁଁ ବଡ଼ ହେଲେ ତତେ ପାଖକୁ ନେଇଯିବି !

ବିୟୁଟି: ବଢ଼ିଆ ହବ ! ଆମେ ଦି’ଜଣ ଗୋଟେ ଖଟରେ ଶୋଇବା ! ଆଉ ଖରାବେଳେ ସବୁଦିନ ମୁଁ ତମକୁ ପଖାଳ ଆଉ ଆଳୁ ଭରତା ଖୁଆଇବି ! ଚାଲ ପଳେଇବା ! ଏଇ ମା’ଟା ଭଲ ନୁହେଁ। କଥା କଥାକେ ବାଡ଼େଉଚି। ଚାଲ

ପକେଇବା ରାଉରକେଲା।

ବବ୍‌ଲୁ: ମତେ ଯୋଉଦିନ ଚାକିରି ମିଳିଯିବ- ସେଦିନ ହିଁ ରାତି ଟ୍ରେନ୍‌ରେ ପକେଇବା, ଗ୍ୟାରେଣ୍ଟି।)

ବିୟୁଟି: କିନ୍ତୁ ତମକୁ ଚାରିଲକ୍ଷ ଟଙ୍କା ଯୋଗାଡ଼ କରିବାକୁ ପଡ଼ିବ।

ବବ୍‌ଲୁ: ଚାରିଲକ୍ଷ ? କାଇଁକି ?

ବିୟୁଟି: ମା' ମତେ କିଣିଚି ତିନି ଲକ୍ଷ ଦେଇ। କହୁଚି ମୁଁ କାମ ନକଲେ ବିକି ଦବ ମତେ... ଚାରି ଲକ୍ଷରେ। କିଏ ଗୋଟେ ଅଜଣା ଲୋକ କିଣି ନେଇଯିବ ମତେ... ଭଲ ଲାଗିବନି। ବଢ଼ିଆ ହବ- ତମେ ଯଦି କିଣି ନବ।

ବବ୍‌ଲୁ: ମୁଁ କ'ଣ ତତେ ଭଲ ଲାଗୁଚି ?

ବିୟୁଟି: ଆହୁରି ଭଲ ଲାଗିବ- ଯେତେବେଳେ ଆମେ ଦୁହେଁ ଗୋଟେ ଖଟରେ ଶୋଇବା।

ବବ୍‌ଲୁ: ଶାଗୁଆନ୍ କାଠରେ ଗୋଟେ ଡବଲ୍ ବେଡ୍ ବନେଇବା।

ବିୟୁଟି: ଗୋଟେ ମୋଟା ଡନଲପ୍ ଗଦି କିଣିବା। ଦିଇଟା ତକିଆ। ଗୋଟେ ତକିଆ ହେଲେ ବି ଚଳିଯିବ। ଶୀଘ୍ର ଟଙ୍କା ଯୋଗାଡ଼ କର- ମୁଁ ତମକୁ ଅପେକ୍ଷା କରି ରହିଲି। (ବିୟୁଟି ଆସି ସୁମନ୍ତକୁ ଆଲିଙ୍ଗନ କଲା ଓ ତାକୁ ଚୁମା ଦେଲା) ଖୋକାଭାଇକୁ କହିବ ନାହିଁ, ମତେ ବାଡ଼େଇବ।

ବବ୍‌ଲୁ: ସେଇଟା ବଦ୍‌ମାସ୍‌ଟେ ! ତୋ' ସାଙ୍ଗରେ ଅଭଦ୍ର କଥା କରୁଚି।

ବିୟୁଟି: ତମେ ମତେ କିଣି ନେଇଯାଅ, ଦେଖିବ। ଆମେ ଆଦୌ ଅଭଦ୍ର କଥା କରିବା ନାଇଁ। ଖାଲି ଭଲପାଇବା।

ବବ୍‌ଲୁ: ତୁ ମତେ ପ୍ରତିଦିନ ପଖାଳ ସାଙ୍ଗରେ ଆଳୁ ଭରତା ଦବୁ। ପ୍ରମିସ୍ !

ବିୟୁଟି: ପ୍ରମିସ୍ !

(ଆଉଥରେ ସୁମନ୍ତକୁ କୁଣ୍ଢେଇ ଧରିଲା। ମଞ୍ଚ ଅନ୍ଧାର ହେଲା।)

# ପଞ୍ଚମ ଦୃଶ୍ୟ

ମଞ୍ଚରେ ଆଲୋକ ଆସିଲା ପରେ ବିଶ୍ୱାମିତ୍ର ମହାନ୍ତି (ଜଣେ ବୟସ୍କ ପ୍ରୌଢ଼) ଢଳି ଢଳି ପ୍ରବେଶ କଲେ। ଅତ୍ୟଧିକ ମଦ୍ୟପାନ କରିଥିବା ଯୋଗୁଁ ତାଙ୍କର ପାଦ ଠିକ୍ ଭାବେ ପଡୁନଥିଲା। ତାଙ୍କ କାନ୍ଧରେ ଗୋଟେ N Choice Unisex Polyster Water proof ବ୍ୟାଗ୍ ଏବଂ ଆର ହାତରେ ଗୋଟେ ଫୋଲଡ଼ିଙ୍ଗ୍ ଟେବୁଲ। ସେ ଟଳମଳ ଅବସ୍ଥାରେ ରହି ମଞ୍ଚ ପାଖକୁ ଆସିଲେ ଓ ଚେଷ୍ଟାକରି ଫୋଲଡ଼ିଙ୍ଗ୍ ଟିଣ ଟେବୁଲଟିକୁ ମଞ୍ଚ ଉପରେ ରଖିଲେ। ତା'ପରେ ବ୍ୟାଗ୍ ଖୋଲି ମଦ ବୋତଲଟିକୁ ଅତି ସନ୍ତର୍ପଣରେ ବାହାରକୁ ଆଣି ଦର୍ଶକମାନଙ୍କୁ ପଛକରି ପିଇଲେ। ତା'ପରେ ମଦ ବୋତଲଟିକୁ ବ୍ୟାଗ୍ ଭିତରେ ଲୁଚେଇ ରଖିଲେ। ବ୍ୟାଗ୍ ଭିତରେ ଥିବା ଲୁଙ୍ଗି ଓ ଲୁଗାପଟା ବାହାର କରି ଚଉତା ଚଉତି କରି ପୁଣି ରଖିଲେ। ରଖୁରଖୁ ସ୍ୱଗତୋକ୍ତି କରୁଥାନ୍ତି।

ବିଶ୍ୱାମିତ୍ର: ନାଇଁ- ଜମାରୁ ମୋ ନାଁଟା କ'ଣ ପଚାରିବେ ନାଇଁ। ଚବିଶି ଘଣ୍ଟା ମାଲ୍ ପିଉଥିବା ଲୋକ ହିସାବରେ ମତେ ଏ ଗୋପାଳପୁର ଏରିଆରେ ସମସ୍ତେ ଜାଣନ୍ତି। ଯା' ଘରେ ଗ୍ୟାସଚୁଲି ଅଛି, ସିଏ ମତେ ଜାଣିବାକୁ ବାଧ୍ୟ। ପ୍ରତିମାସରେ ଆଜ୍ଞା, ମୁଁ ସେମାନଙ୍କ ଘରେ ସିଲିଣ୍ଡର ସପ୍ଲାଇ କରେ। ତେବେ କଥା ହେଲା ସାର୍... ଏଇ ଯୋଉ ମଦଟା ଅଭ୍ୟାସ ହେଇଯାଇଚି ସେଇଟା ଖତରନାକ୍! କ'ଣ କରିବି

କହୁନାହାନ୍ତି... ଏଇଥିରୁ ଟିକିଏ ଟିକିଏ ସେବନ ନକଲେ ଗାଡ଼ି ଚଳୁନାଇଁ।

(ପୁଣି ବୋତଲଟା ବାହାର କରି ଠିପିରେ ଟିକିଏ ଢାଳି ସେଇଥିରୁ ଟୋପାଏ ପରିସେଚନମ୍ କ୍ରିୟାରେ ବ୍ରାହ୍ମଣମାନଙ୍କ ଭଳି ମୁଦ୍ରା ଦେଖାଇଲେ: )

ଓଁ ପ୍ରାଣାୟ ସ୍ୱାହା
ଓଁ ଅପାନାୟ ସ୍ୱାହା
ଓଁ ସମାନାୟ ସ୍ୱାହା
ଓଁ ଉଦାନାୟ ସ୍ୱାହା
ଓଁ ବ୍ୟାନାୟ ସ୍ୱାହା
ଓଁ ବ୍ରହ୍ମଣେ ସ୍ୱାହା
ଅମୃତ ପାନୀୟଂ ସମର୍ପୟାମି।

(ଏହି ମନ୍ତ୍ର ପଢ଼ି ମଦ୍ୟପାନ କଲେ।)

(ଠିକ୍ ଏତିକିବେଳେ ପ୍ରବେଶ କଲେ ଭୀମ ବେହେରା। ଗୋପାଳପୁରର ପ୍ରଖ୍ୟାତ ଗୁଣ୍ଡା। ମଦ୍ୟପ ଜଣକ ଭୀମ ବେହେରାର ସାନ ଭଉଣୀ ବିଧବା ପୁଷ୍ପାକୁ ନିକଟରେ ବିବାହ କରିଛନ୍ତି।)

ଭୀମା: ଯାଃ ଶଳା ! ତମେ ଆସି ଏଇଠି, ଆଉ ଆମ ଘରଟା ଯାକ ଲୋକ ତମକୁ ଅଧାଘଣ୍ଟା ହେଲା ଖୋଜୁଛୁ ? ତମର ଏଇ ଟିଣ ଟେବୁଲ ଆଉ ବ୍ୟାଗ୍ ନେଇ ଯା'ଡ଼େ କୁଆଡ଼େ ଆସିଲ ?

ବିଶ୍ୱାମିତ୍ର: ଆରେ ବାବା... ଟିକିଏ ବାହାଡ଼ାଗୁଡ଼ା ଆଡ଼େ ବୁଲିକି ଆସିଥାନ୍ତି।

ଭୀମା: ବିଶିଆଇ ! ମନେ ରଖିଥିବ ତମେ ଏକାଦଶୀ ବେହେରାର ବଡ଼ପୁଅ ଭୀମା ସାଙ୍ଗରେ କଥା ହଉଚ। କ'ଣ କରି ପାଇଲ କିହୋ ଆମକୁ ? ମୋ ବିଧବା ଭଉଣୀଟାକୁ ବିଭା ହେଇ କୋଡ଼ିଏ ହଜାର ଟଙ୍କା ଯୌତୁକ ନେଇଚ। ଶପଥ କରିଥିଲ ବାହାଡ଼ାଗୁଡ଼ାର ସୀମା ମାଡ଼ିବନି ! ଏବେ ଆଠଟା ଦିନ ଯାଇନି କୁଆଡ଼େ ମାଡ଼ି ଯାଉଚ ?

ବିଶ୍ୱାମିତ୍ର: ଖାଲି ଦେଖିଦେଇ ଆସିବି... ବବ୍‌ଲୁ ମା'ଟା କ'ଣ କରୁଚି।

ଭୀମା: (ଖଚ୍ କରି ଗୋଟେ ଛୁରୀ ବାହାର କଲା) ଏଇଟାକୁ ଦେଖୁଚ ? ସିଧା ପୂରେଇ ଦେବି। ଶଳା ଧୋକାବାଜ୍!

ବିଶ୍ୱାମିତ୍ର: ଏ... ଏ... ଏ... ମୁହଁ ଖରାପ କରନା ଭୀମା ! ଛୁରୀ କ'ଣ ଦେଖଉଚୁ ?

ଭୀମା: ଛୁରୀ ଋକୁରେ ଆମେ ବଙ୍କା ଲୋକକୁ ସିଧା କରୁ, ଜାଣି ଥା' ବିଶ୍ୱାମିତ୍ର ମହାନ୍ତି। ମୋ' ଭଉଣୀ ପୁଷ୍ପାକୁ ତୁ' ବାହା ହେଇନୁ ମାଗଣାରେ। ଶଳା ତତେ ଜୋଇଁ କରିବା ପାଇଁ ମୋ' ବାପା ଏକାଦଶୀ ବେହେରା କୋଡ଼ିଏ ହଜାର ଖର୍ଚ୍ଚ କରିଚି।ଏଇଟା ଘେରି ପଇସା ନୁହେଁ ବେ ! ହକ୍ ଝାଳବୁହା ଧନ !

ବିଶ୍ୱାମିତ୍ର: ସେଇଠୁ ? ଏ ବିଶ୍ୱାମିତ୍ର ମହାନ୍ତିକୁ ତମେ କିଣି ପକେଇଲ ବୋଲି ଭାବିଲ ନା କ'ଣ ? ମନେ ରଖୁଥା'- ବିଶ୍ୱାମିତ୍ର ଖାଲି ଗ୍ୟାସ ସିଲିଣ୍ଡର ବାଣ୍ଟୁନି...ସିଏ ନିଜେ ଗୋଟେ ସିଲିଣ୍ଡର ! କଥା ଏପଟ ସେପଟ ହେଲେ ନିଆଁ ଲାଗିଯିବ।

ଭୀମା: (ଦର୍ଶକମାନଙ୍କୁ) ଶଳା ମଦୁଆ ମତେ କ'ଣ ଧମକ ଦେଲାଣି ! ଏଇଟା ଶଳା ସିଧା ଆଙ୍ଗୁଠିରେ ଘିଅ ବାହାରିବା ବେଳା ନୁହେଁ। ଉତ୍ତମ ମଧ୍ୟମ ଦରକାର !

(ପାଖକୁ ଯାଇ ବିଶ୍ୱାମିତ୍ରର କଲର୍ ଧରି ହଲେଇ ଦେଲା)

କ'ଣ କହିଲୁ ଶଳା ? ମୋ' ଭଉଣୀ ଗୋଟେ ସିଲିଣ୍ଡରକୁ ବାହା ହେଇଚି ? ମୋ' ଭଉଣୀ ପାଇଁ ଗୋଟେ ସ୍ୱାମୀ ଦରକାର ଥିଲା। ତତେ କୋଡ଼ିଏ ହଜାର ଦେଇ ଆମେ କିଣିଚୁ ବେ' ! ଆଠ ଦଶମାସ ଭିତରେ ପୁଷ୍ପା ଗୋଟେ ପୁଅ କି ଝିଅ ଜନ୍ମ କରିବାକୁ ବାଧ୍ୟ। ମୁଁ ଶଳା ଭୀମା ବେହେରା... ତତେ ଡେଲି ସଂଧ୍ୟାରେ ଗୋଟେ ବୋତଲ ମଦ ଦେବି ଆଉ ଗୋଟେ ପ୍ଲେଟ୍ ଚିକେନ୍ ପକୋଡ଼ା... କିନ୍ତୁ... କିନ୍ତୁ... ଦଶମାସ ଭିତରେ ଭୀମା ଯଦି ମାମୁ ନ ହେଇଚି ତତେ ଶଳା ଖାସୁ କରିଦେବି ବେ' ! ଜାଣି ଥା' ! ନାଇଟ୍ ଡ୍ୟୁଟି ଠିକ୍ କରୁଥିବୁ- ନହେଲେ ଶଳାକୁ ଗୋପାଳପୁର ପୋଖରୀ ହିଡ଼ରେ ଯୋଉ ବରଗଛ ଅଛି- ସେଇଠି ଟାଙ୍ଗିଦେବି- ଯାଃ

ଶଳା କୁଆଡ଼େ ଯାଉଚୁ ଯା'। (ଠେଲି ଦେଲା ଓ ବିଶ୍ୱାମିତ୍ର ତଳେ ପଡ଼ିଗଲା। ଚିତ୍କାର କରି ଡାକିଲା- ଭୀମା ତାକୁ ପିଟିବା ପାଇଁ ହାତ ଉଠେଇବା ବେଳେ)

ବିଶ୍ୱାମିତ୍ର: ପୋଲିସ୍! ପୋଲିସ୍! ଗୋପାଳପୁର ପୋଲିସ୍! (ପ୍ରବେଶ କଲେ ପୋଲିସ୍ ଏ.ଏସ୍.ଆଇ ପାହାଡ଼ ସିଂ। ଦେଖିଲେ ଭୀମା ବିଶ୍ୱାମିତ୍ରକୁ ପିଟୁଛି।) ଭୀମା!

ଭୀମା: (ନିଶ ମୋଡ଼ି) ହୁଃ, ହୁକୁମ୍ ସାର୍!

ଏ.ଏସ୍.ଆଇ: (ବିଶ୍ୱାମିତ୍ରକୁ ଦେଖାଇ) ଏଇଟା କିଏ? ତାକୁ ପିଟୁଚୁ କାଇଁକି? କିଏ ଏଇଟା? (ବିଶ୍ୱାମିତ୍ରକୁ) କିଏ ବେ ତୁ? ଭୀମା ସାଙ୍ଗରେ ପଙ୍ଗା ନଉଚୁ? ଖୋପଡ଼ି ଖରାପ?

ବିଶ୍ୱାମିତ୍ର: ମୁଁ ବିଶ୍ୱାମିତ୍ର ମହାନ୍ତି।

ଏ.ଏସ୍.ଆଇ: ବିଶ୍ୱାମିତ୍ର ମହାନ୍ତି? ନାଁ ଟା ଶୁଣିଲା ପରି ଲାଗୁଚି! ତୋ' ନାଁରେ ଗୋଟେ ଏଫ୍.ଆଇ.ଆର୍. ହସ୍ତଗତ ହେଇଚି। ତୋ' ପୁଅ ସୁମନ୍ତ ମହାନ୍ତି, ବୟସ ବାଇଶି। ସିଏ ଦେଇଚି।

ଭୀମା: ସେଇଟା କିଏ ଶଳା?

ବିଶ୍ୱାମିତ୍ର: ପୁଅ ମୋର ଏଫ୍.ଆଇ.ଆର୍. ଦେଇଚି? କ'ଣ ବୋଲି?

ଏ.ଏସ୍.ଆଇ: ତୁ' ତୋର ସ୍ତ୍ରୀକୁ ଛାଡ଼ି ଆଉ ଗୋଟେ ବାହା ହେଇଯାଇଚୁ!

ଭୀମା: ଏ.ଏସ୍.ଆଇ ସାର୍! ସେ ଆଉ ଗୋଟେ ନୁହଁ- ମୋ ଭଉଣୀ। ଭୀମାର ଭଉଣୀ ପୁଷ୍ପାକୁ ବାହାହେଇ ବିଶିଆ ଭାଇ ଆମ ଘରେ ଅଛନ୍ତି। ଡେଲି ଚିକେନ୍ କଷା ଆଉ ବିରିୟାନୀ ଖାଉଛନ୍ତି। ବାହାଡ଼ାଗୁଡ଼ାର ସେ ବୁଢ଼ୀ କ'ଣ ଖାଇବାକୁ ଦଉଚି ମୋ' ଭିଣେଇକୁ? ଶଳା, ମାଲ ପିଇ ଘରକୁ ଗଲେ ପଖାଳ ଆଉ ବାଇଗଣ ପୋଡ଼ା ଖାଇବାକୁ ଦଉଚି। କାଇଁକି ଯିବ ସେଇଠିକି? ଏଇଠି ରହିବ ମୋ' ଭିଣେଇ! ଦେଖିବା ଶଳା କୋଉ ପୁଅ ତାର କ'ଣ କରିବ!

ଏ.ଏସ୍.ଆଇ: ଶାନ୍ତି! ଶାନ୍ତି! ଗଣ୍ଡଗୋଳ କରି ଫଉଜଦାରୀ କଲେ ଭୀମା ତତେ ଆଗତୁରା ଆରେଷ୍ଟ କରି ଭିତରେ ପୁରେଇ ଦେବି। ଏନ୍.ଏସ୍.ଏ., ୨୫୦ ଲଗେଇଦେବି!

ଭୀମା: (ରାଗିଯାଇ) କାହିଁକି? ବିଶ୍ୱାମିତ୍ର ମହାନ୍ତି ହକ୍ ବାହା ହେଇଚି

ମୋ'ଭଉଣୀକୁ। ଆମେ ୨୦ ହଜାର ଯୌତୁକ ଦେଇ କିଣିଚୁ ଏ ଜୋଇଁକୁ! ଆମ ନାଁରେ ଏଫ୍.ଆଇ.ଆର୍. ଦବ? ଏଡ଼େ ଜାଲମ? ଆଉ ଆମେ ସେ ଟୋକାକୁ ଛାଡ଼ିଦବୁ?

ବିଶ୍ଵାମିତ୍ର: ଶୁଣୁ ଭୀମା- ବାବ୍‌ଲୁଟା ୨୦-୨୧ ବର୍ଷର ଛୁଆଟେ- ତା' ସାଙ୍ଗରେ ତୁ' କାଇଁକି ଲାଗିବୁ?

ଭୀମା: ଆଉ ମୋ' ଆଗରେ ଗୁଣ୍ଡାଗିରି ଦେଖେଇକି ତମର ସେ ଯୋଗ୍ୟ ପୁଅ! ଶଳା ବିଛା ମନ୍ତ୍ର ଜାଣିନି- ସାପ ଗାତରେ ହାତ ପୁରେଇବ?

ବିଶ୍ଵାମିତ୍ର: ଛାଡ଼, ଛାଡ଼-ଛାଡ଼, ଆପଣ ଯାଆନ୍ତୁ ଏ.ଏସ୍.ଆଇ. ବାବୁ! ଭୀମା ଆମର ବଦଳି ଗଲାଣି। ଏଣିକି ସୁନା ପୁଅ।

ଏ.ଏସ୍.ଆଇ: କ'ଣ ରତ୍ନାକର ବାଲ୍ମିକୀ ହେଇଗଲା ଯା' ଭିତରେ? ଏଇ ପରା ଟିକିଏ ତଳେ ତମକୁ ପିଟୁଥିଲା ଆଉ ତମେ ପୋଲିସ୍‌କୁ ଡାକୁଥିଲ!

(ବିଶ୍ଵାମିତ୍ର ଭୀମା ପିଠିକୁ ଆଉଁସି ଆଉଁସି କରି)

ବିଶ୍ଵାମିତ୍ର: ଆପଣଙ୍କୁ ଦେଖି ଭୀମାଟା ଆମର ସୁନା ପୁଅ ହେଇଗଲା। ସୁନା ପୁଅ।

ଏ.ଏସ୍.ଆଇ: ସୁନା ପୁଅ ତ 'ପୋଲିସ୍' 'ପୋଲିସ୍' ଡାକ ବୋବାଳି ଛାଡ଼ିଥିଲୁ କାଇଁକି! ଶଳା ଟାଇମ୍ ବରବାଦ୍ କରୁଛି।

ବିଶ୍ଵାମିତ୍ର: ଆପଣ ଯାଆନ୍ତୁ ପୋଲିସ୍ ବାବୁ!

ଏ.ଏସ୍.ଆଇ: ମାରପିଟ୍... ଗଣ୍ଡଗୋଳ... ବିଧାଚପୁଡ଼ା... ସବୁ ବନ୍ଦ!

(ପୋଲିସ୍ ଚାଲିଗଲା)

ଭୀମା: (ବିଶ୍ଵାମିତ୍ରକୁ ଧମକାଇଲା) ଚାଲ- ବ୍ୟାଗ୍ ଧରି ଭିତରକୁ! ଚାଲ। ମୁଁ ତମର ଟେବୁଲ ବୋହିବି।

(ଚାଲିଗଲେ: ଅନ୍ଧାର)

# ଷଷ୍ଠ ଦୃଶ୍ୟ

(ପୀତାମ୍ବର କାନୁନ୍‌ଗୋ'ଙ୍କ ଗୁହାଳପଡ଼ା ଗାଁ ଘର। ଗୋଟେ ଲମ୍ବା ବାଉଁଶରେ ଲାଗିଥିବା ଛାଞ୍ଚୁଣୀ ଧରି ସୁକୁମାରୀ ଉପରର ଅଳନ୍ଧୁସଫା କରୁକରୁ ବଡ଼ ପାଟିରେ ବିରକ୍ତି ପ୍ରକାଶ କରୁଥିଲେ।)

ସୁକୁମାରୀ: ହେଃ ! ଏଗୁଡ଼ା ମୋ' ଦେଇ ହବନି। ମୁଣ୍ଡ ଉପରେ ଅଳନ୍ଧୁଗୁଡ଼ାକ ପଡୁଚି ! କୁଆଡ଼େ ଗଲା ସେ ବିୟୁଟି ? (ବଡ଼ ପାଟିରେ) ଆଲୋ ହେ' ବିୟୁଟି... କ'ଣ କରୁଚୁ ? ଶୀଘ୍ର ଆ', ବାସନମଜା ସରିଲାଣି ନା ନାଇଁ ? ଆଇଲୁ ବେଡ୍‌ରୁମ୍ ଛାତଟା ସଫା କରିବୁ ! ଅଳନ୍ଧୁ ଭର୍ତ୍ତି ହେଇଗଲାଣି !

(ପ୍ରବେଶ କଲା ବିୟୁଟି। ଉପରକୁ ଟେକି ହେଇଯାଇଥିବା ଫ୍ରକ୍‌କୁ ସଜାଡୁ ସଜାଡୁ)

ବିୟୁଟି: ଏ ହେ... ! ତମେ କାଇଁକି ଘର ସଫା କରୁଚ ମା' ? ମତେ କହିଲନି ?

ସୁକୁମାରୀ: ଅଧାଘଣ୍ଟା ହେଲା ଡାକୁଚି... କ'ଣ କରୁଥିଲୁ ?

ବିୟୁଟି: ଖୋକା ଭାଇର ଗୋଡ଼ ଚିପି ଦଉଥିଲି।

ସୁକୁମାରୀ: ଏଁ? ଗୋଡ଼ ଚିପୁଥିଲୁ? ତା'ମାନେ ପୁଣି ତା' ବେଡ୍‌ରୁମ୍‌କୁ ଯାଇଥିଲୁ? ତତେ ମନା କରିଥିଲି ନା...? ପଚିଶି ବର୍ଷର ଯୁବକ ସିଏ... ତାର ଗୋଡ଼ ଚିପିବୁ ତୁ? ସାଇପଡ଼ିଶା ଦେଖିଲେ କ'ଣ କହିବେ?ଏକେ ତ ସଜମାଛରେ ପୋକ ପକେଇବା ଲୋକ ଭର୍ତ୍ତି ଏ ଗୋପାଳପୁର ଗାଁରେ... କାଳେ ଯଦି ପେଟରେ ହେଇଯିବୁ- ସେମାନେ ଆସି କ୍ଷତିପୂରଣ ମାଗିବେ। ମଝି ସାଇ ପଧାନ ଘର କାମବାଲୀଟା ଏମିତି ଗୋଡ଼ ଚିପୁ ଚିପୁ ଗର୍ଭ ହେଇଗଲା। ସାଇ ଲୋକେ ଆବରସନ୍ କରିବା ପାଇଁ ୧୦ ହଜାର ମାଗିଲେ। ବାଧ ହେଲା ଦବାକୁ। ତୋର ଯଦି କେତେବେଳେ କ'ଣ ହେଇଯାଏ- ମୁଁ ଦଶ ହଜାର ଟଙ୍କା ଦେଇପାରିବିନି ଲୋ'! କହି ଦଉଚି। ତତେ ବାଧ ହେଇ ବିକି ଦେବି...।

ବିୟୁଟି: ଦିଅ! ଛାଞ୍ଚୁଣୀ ବାଡ଼ିଟା ମତେ ଦିଅ...

(ଏତିକିବେଳେ ବାହାରେ ମାଙ୍କଡ଼ ନାଚ ବାଜା ବାଜିଲା)

ସୁକୁମାରୀ: (ଖୁସି ହେଇ) ମାଙ୍କଡ଼ ନାଚ! ମାଙ୍କଡ଼ ନାଚ ଆସିଚି। ମୁଁ ଯାଉଚି। ଦାଣ୍ଡ କବାଟ କିଳିଦେଇ ସଫା କରିବୁ। ମୁଁ ଯାଉଚି। ଘରେ କିଏ ନାହିଁ। ଖୋକା ବାପା ଚଷଜମିକୁ ଆଉ ବାବ୍‌ଲୁ ଗଲାଣି ରାଇସ୍ ମିଲ୍!

(ସୁକୁମାରୀ ଚାଲିଗଲେ। ବିୟୁଟି ଦାଣ୍ଡଦୁଆରକୁ ଗଲା। କିନ୍ତୁ ଦୁଆର ନଦେଇ ଫେରିଆସିଲା। ଗୀତ ଗାଇଗାଇ ଛାତ ସଫା କଲା। ଆବହ ସଂଗୀତ। ଲୁଚି ଲୁଚି ଭିତରୁ ଆସିଲା ଖୋକା। ଲୁଚି ଲୁଚି ଆସି ପଛ ପଟୁ ବିୟୁଟିକୁ ଭିଡ଼ି ଧଇଲା। ବିୟୁଟି ହସି ହସି ଅଭିଯୋଗ କଲା)

ବିୟୁଟି: ଆରେ... ଆରେ... ଇଏ କ'ଣ କରୁଚ ଖୋକା ଭାଇ? ଛାଡ଼... ଛାଡ଼...ମତେ।

ଖୋକା: ଛାଡ଼ିଦେବି? ଘରେ କେହି ନାହାନ୍ତି। ଆମ ପାଇଁ ସୁବର୍ଣ୍ଣ ସୁଯୋଗ... ଆ' ମୋ' ବେଡ୍‌ରୁମ୍ ସଫା କରିବୁ ଆ'!

ବିୟୁଟି: ମା' ଜାଣିଲେ ଗାଳିଦେବେ।

ଖୋକା: ଆ ବେ... ମା' ଗଲାଣି ମାଙ୍କଡ଼ନାଚ ଦେଖି... ଆ'!
(ବିୟୁଟିର ଛାଞ୍ଚୁଣୀ ଫୋପାଡ଼ି ଦେଇ ତାକୁ ଟେକି ଆଣି ତଳେ ଶୁଆଇ ଦେଲା ଖୋକା। ତାକୁ ରେପ୍ କରିବା ସମୟରେ ବାହାରୁ ଧଡ଼୍ କରି ପ୍ରବେଶ କଲା ବବ୍‌ଲୁ)

ବବ୍‌ଲୁ: ଆରେ... ଇଏ କ'ଣ...? ଛୋକାର କଥା... ଏ! ଖୋକା ଭାଇ! (ଛାଞ୍ଚୁଣୀଟା ତଳୁ ଉଠାଇ ସେଥିରେ ପିଟିଗ୍ଲଲିଲା ଖୋକାକୁ। ପ୍ରାୟ କୋଡ଼ିଏ କି ପଚିଶ ଥର। ଖୋକା ବଡ଼ ପାଟିରେ ଚିତ୍କାର କଲା- ମା' ମରିଗଲି। ବାହାରୁ ଦୌଡ଼ି ଆସିଲେ ସୁକୁମାରୀ। ବବ୍‌ଲୁ ଖୋକାକୁ ପିଟିବା ଦେଖିଲେ। ସେତେବେଳକୁ ବିଉଟି ଉଠି ପ୍ୟାଣ୍ଟିକୁ ଉପରକୁ ଟେକି ଫ୍ରକ୍ ସଜାଡ଼ିବାରେ ଲାଗିଲା। ମାଡ଼ ଖାଇ ଖୋକା ବବ୍‌ଲୁକୁ ପ୍ରବଳ ପିଟିଲା। ଦୁହେଁ ଗଡ଼ାଗଡ଼ି ହେଇ ଫାଇଟିଙ୍ଗ୍ କଲାବେଳେ ପ୍ରବେଶ କଲେ ସୁକୁମାରୀ ଓ ପୀତାମ୍ବର। ପୀତାମ୍ବର କୌଣସି ମତେ ଦୁହିଁଙ୍କୁ ଛଡ଼େଇ ଦେଲେ।)

ପୀତାମ୍ବର: କ'ଣ ହେଲା? ଆରେ ହେଇଚି କ'ଣ? ଝଗଡ଼ା କାଇଁକି କରୁଚ?

ବବ୍‌ଲୁ: ଖୋକା ଭାଇ... ଛୋକାର କଥା କରୁଥିଲା ବିୟୁଟି ସାଙ୍ଗରେ। ଏଗୁଡ଼ା ଏକଦମ୍ ଖରାପ କଥା ମାମା!

ସୁକୁମାରୀ: ସେଇଠୁ ତୋର କ'ଣ ଗଲା? ତୁ ଯାଇ ବିଉଟିକୁ ରକ୍ଷା କଲୁ- ଖୋକାକୁ ପିଟିଲୁ କାଇଁକି? ଖୋକା ତୋ'ଠୁ ତିନିବର୍ଷ ବଡ଼!

ପୀତାମ୍ବର: ସବୁ ଏଇ ଟୋକୀର ଦୋଷ! ମନା କରୁଚି କାମବାଲୀ ଦରକାର ନାଇଁ... ତିନିଲକ୍ଷ ଦେଇ କିଣିଲ ଏଇଟାକୁ। ଏବେ ସମ୍ଭାଳ। ଏଇଟା ତା'ହେଲେ କେବେଠୁ ଆରମ୍ଭ ହେଲାଣି? କି ଲୋ ବିଉଟି? ତତେ ଖୋକା କେବେଠୁ ଏଗୁଡ଼ା କଲାଣି?

ବିୟୁଟି: ସବୁବେଳେ ସବୁଦିନ କରୁଛନ୍ତି ବାବୁ। ମୁଁ ତାଙ୍କୁ ମନା କରୁଚି ବାବୁ! ଖୋକାଭାଇ ଶୁଣୁନାହାନ୍ତି...!

ସୁକୁମାରୀ: ଚୁପ୍‌କର! ସବୁ ତୋର ଦୋଷ... ମୋ' ପୁଅର ଚରିତ୍ର ନଷ୍ଟ କରିଚୁ ତୁ'! ବାହାର ହାରାମୀ- ମୋ ଘରୁ ବାହାର।

ନହେଲେ ତତେ ବିକ୍ରି କରିଦେବି ଭଲ ଗରାଖ ମିଳିଲେ।
(ବିଉଟିକୁ ଆଠ ଦଶ ଚାପୁଡ଼ା ଦେଇ କହିଲେ)

ସୁକୁମାରୀ: ଯାଃ- ଯା' ମୋ' ଘରୁ। (ନିଜେ ବି ଭିତରକୁ ଚାଲିଗଲେ)

ପୀତାମ୍ବର: ଛି- ଛି- ଛି- ଘର ଭିତରେ ଏଗୁଡ଼ା କ'ଣ ହଉଚି? ଗୋଟାକର ବୟସ ବାଇଶି- ଆଉ ଗୋଟେ ପଚିଶି ବର୍ଷର। ଗୋଟେ କାମବାଲୀକୁ ନେଇ ଦି'ଭାଇ ଭିତରେ ମୁଷ୍ଟି ଯୁଦ୍ଧ?

ବବ୍‌ଲୁ: ଲାତ, ଗୋଇଠା, ଚାପୁଡ଼ା- ଯାହା ପାଇଲା ମାରି ଦେଇଗଲା ମତେ।

ପୀତାମ୍ବର: ତୁ' ତାକୁ ଛାଞ୍ଚୁଣୀରେ ବାଡ଼େଇଲୁ କାହିଁକି? ଖୋକା ତୋର ବଡ଼ଭାଇ!

ବବ୍‌ଲୁ: ସିଏ କାଇଁକି ବିଉଟି ସାଙ୍ଗରେ ଖରାପ କାମ କଲା?

ପୀତାମ୍ବର: ମୁଁ ପଚାରୁଚି ବିୟୁଟି ତୋର ଏମିତି କିଏ? ହୁଁଃ- ସବୁ ବୟସର ଦୋଷ... ରାଇସ୍ ମିଲ୍‌ରେ ମୁଁ କହି ଦଉଚି...ତୁ' ଦି' ଚାରିଦିନ ଗାଁ ଆଡ଼େ ବୁଲି ଆସିବୁ ଯା'।

ବବ୍‌ଲୁ: ଦିନ ଦି'ଟାବେଳେ ବସ୍ ଅଛି। ଆଜି ଯିବି?
(ପୀତାମ୍ବର ପକେଟରୁ ଗୋଟେ ବନ୍ଦ ଲଫାପା ବାହାର କରି ଦେଲେ ବାବ୍‌ଲୁକୁ)

ପୀତାମ୍ବର: ନେ' ଏଇଟା ନେ' ବୋଉକୁ ଦେଇଦବୁ। ତୋର ଦରମା ପଇସା। ତତେ ନଦେଇ ମତେ ଦଉଚି ମୋ ସାଙ୍ଗ। ଦି'ମାସର ଦରମା ଅଛି ସେଥିରେ। ବୋଉକୁ ଦେଇଦବୁ।
(ବବ୍‌ଲୁ ଲଫାପା ନେଇ ଚାଲିଗଲା। ପୀତାମ୍ବର ଦାଣ୍ଡପଟେ ଯାଉ ଯାଉ କହିଲେ: )

ପୀତାମ୍ବର: ବୋଉକୁ କହିବୁ ସୁବିଧା ଦେଖି ମୁଁ ଯିବି। ହେଲା? ବର୍ତ୍ତମାନ ଯିବା ଦରକାର ନାଇଁ- କ'ଣ ଦି'ଟା ଖାଇଦେଇ ବାହାରିବୁ- ହେଲା? ମୁଁ ଆସୁଚି। (ଚାଲିଗଲେ)
(ବାବ୍‌ଲୁ ଲଫାପା ଖୋଲି ପଇସା ଗଣୁଥିଲା। ପ୍ରବଳ ରାଗି ପ୍ରବେଶ କଲେ ସୁକୁମାରୀ।)

ସୁକୁମାରୀ: ଟଙ୍କା? କୋଉଠୁ ଆଣିଲୁ ଏତେ ଟଙ୍କା?

ବବ୍‌ଲୁ: ରାଇସ୍ ମିଲ୍‌ର ଦରମା ଟଙ୍କା। ମାମୁ ଦେଲେ! ମାଇଁ ମୁଁ

ଆଜି ଗାଁକୁ ଯିବି, ଦିନ ଦି'ଟା ବସ୍‌ରେ ! ମତେ ଦି'ଟା କ'ଣ ଖାଇବାକୁ ଦିଅ-

ସୁକୁମାରୀ: ଆଜି ରୋଷେଇ ବନ୍ଦ !

ବବ୍‌ଲୁ: କାଇଁକି ?

ସୁକୁମାରୀ: ମାଡ଼ ଖାଇ ବିଉଟି ବାଡ଼ିପଟ ପିଜୁଳି ଗଛ ମୂଳେ ରୁଷି ବସିଚି।

ବବ୍‌ଲୁ: ତମେ ରୋଷେଇ କରୁନ' ?

ସୁକୁମାରୀ: ମୁଁ ? ଏ ବୟସରେ ମସଲା ବାଟି, ପରିବା କାଟି ରୋଷେଇ ଘରକୁ ଯିବି ? ଅସମ୍ଭବ। ତିନି ଲକ୍ଷ ଦେଇ କାମବାଲୀଟାକୁ କିଣିଚି କାହିଁକି ? ଆଜି ସିଏ ରୋଷେଇ ଅଲବତ କରିବ- ନହେଲେ ସେଇଟାକୁ ବିକି ଦେବି।

(ସୁକୁମାରୀ ଚାଲିଗଲେ ବିଉଟି ଉପରେ ବିରକ୍ତ ହେଇ। ବବ୍‌ଲୁ ପୁଣିଥରେ ଟଙ୍କା ଗଣିଲା। ଗୋଟେ କଂସାରେ ଖାଇବା ନେଇ ଆସିଲା ବିଉଟି)

ବିୟୁଟି: ଏତକ ଖାଇଦିଅ।

ବବ୍‌ଲୁ: ମୁଢ଼ି ?

ବିୟୁଟି: ଆଉ କିଛି ନଥିଲା। ମୁଢ଼ି ସାଙ୍ଗରେ ଗୋଟେ ପିଆଜ ଆଉ କଞ୍ଚାଲଙ୍କା ଦେଇଚି। କହିବ ଯଦି ବାସି ତରକାରୀ ଅଛି। ଆଳୁ କୋବି ଝୋଳ। ଆଣି ଦେବି ?

ବବ୍‌ଲୁ: ଆଉ।

ବିୟୁଟି: ତମ ପାଖରେ ଚାରି ଲକ୍ଷ ଟଙ୍କା ଅଛି ?

ବବ୍‌ଲୁ: ଚାରି ଲକ୍ଷ ? ସିଏ ତ ଅନେକ ଟଙ୍କା ! ମୋ ପାଖରେ ଚାରି ହଜାର ବି ହଉନି। ଦି'ଥର ଗଣିଲିଣି। ମାସକୁ ଦି'ହଜାର ଦରମା ହେଲେ ଦି' ମାସରେ ଚାରି ହଜାର ହବା କଥା କି ନାଇଁ ?

ବିୟୁଟି: ରାଇସ୍ ମିଲ୍ ତମକୁ ଦି'ହଜାର ଦଉଚି ?

ବବ୍‌ଲୁ: ଦଉଚି। କିନ୍ତୁ ମାମୁ ତାଙ୍କର ମାସିଆରୀ କମିଶନ୍ ପାଞ୍ଚଶ' ଟଙ୍କା କାଟି ଦେଇଛନ୍ତି।

ବିୟୁଟି: କାଇଁକି ?

ବବ୍‌ଲୁ: ଚାକିରିଟା ତାଙ୍କ ସୁପାରିଶ୍‌ରେ ହେଇଚି। ସେଇଥିପାଇଁ ମାସକୁ

ପାଁ'ଶ କମିଶନ୍!

ବିଉଟି: ତା'ହେଲେ ତ ବଡ଼ ଅସୁବିଧା ହେଲା... ମା' ମତେ ଚାରି ଲକ୍ଷରେ ବିକ୍ରି କରିଦବ କହୁଚି। ମୟୁରଭଞ୍ଜ ଉଦଳାରେ। ମୋର କିନ୍ତୁ ଏତେବାଟ ଯିବାକୁ ଇଚ୍ଛା ନାଇଁ। ଯୋଉ ଲୋକଟା କିଣୁଚି- ସେଇଟା ବୁଢ଼ାଟେ! (କଅଁ କେଇ) ସେଇଥିପାଇଁ କହୁଥିଲି- ଚାରି ଲକ୍ଷ ଯୋଗାଡ଼ କରି ତମେ ମତେ କିଣିନିଅ- ବଢ଼ିଆ ହବ। ଖଟ ନହେଲେ ନାଇଁ- ଆମେ ତଳେ ମସିଣା ପକେଇ ଶୋଇପଡ଼ିବା। ବଢ଼ିଆ ହବ... (ବିଉଟି ବାବ୍‌ଲୁକୁ କୁଣ୍ଢେଇ ଧରି ଗୋଟେ ଚୁମା ଦେଲା। ଧଡ଼୍ କରି ପ୍ରବେଶ କଲେ ସୁକୁମାରୀ)

ସୁକୁମାରୀ: ଏୟ! କ'ଣ କରୁଚୁ ମୋ ଭଣଜାକୁ? ଏଁ?

ବିଉଟି: (ସେମିତି କୁଣ୍ଢେଇ ଧରି ବାବ୍‌ଲୁକୁ, ନୀରବ)

ସୁକୁମାରୀ: ବାହାର... ବାହାର ମୋ' ଘରୁ- ବାହାର।
(ପାଖକୁ ଯାଇ ବିଉଟିକୁ ଛଡ଼େଇ ଦଶ ବାର ଚାପୁଡ଼ା ମାରି ପଠେଇ ଦେଲେ। ବାବ୍‌ଲୁ ଗୋଟେ କଅାଲଙ୍କା ଚେବେଇଲା।)
(ମଞ୍ଚ ଅନ୍ଧାର)

# ସପ୍ତମ ଦୃଶ୍ୟ

(ବାହାଡ଼ାଗୁଡ଼ା ଗାଁ ମୁଣ୍ଡ ଚାକ୍ଷ ଦୋକାନ। ପ୍ରବେଶ କଲା ଭୀମା ଓ ତା' ସାଙ୍ଗରେ ଦୁଇଜଣ ଗୁଣ୍ଡା। ନରି ସାହୁର ଚା' ଦୋକାନ ବେଞ୍ଚ ଉପରେ ଗୋଡ଼ ଥୋଇ ପଚାରିଲା)

ଭୀମା: ଏ ଦୋକାନୀ! ସୁମନ୍ତ ମହାନ୍ତିକୁ ଚିହ୍ନିଚ?

ନରି: ତମେ କିଏ ବାବୁ?

ଭୀମା: ଚେହେରାରୁ ଜାଣିପାରୁନ? ମୁଁ ଭୀମ ବେହେରା। ବନ୍ଧାକୋବି ପାର୍ଟିର ପ୍ରଭାରୀ।

ନରି: ପ୍ରଭାରୀ? ପ୍ରଭାରୀ ତ ଆମ ଗାଁ ଅରକ୍ଷିତ ଡାକୁଆ!

ଭୀମା: ସିଏ ସାରା ରାଜ୍ୟର, ମୁଁ ତାଙ୍କ ଅଧୀନରେ କାମ କରୁଚି। ତମ ଗୋପାଳପୁର ପଞ୍ଚାୟତ ସମିତିର ଭୋଟ କଥା ମୁଁ ବୁଝିବି। ଜାଣିଚ ତ ଇଲେକ୍‌ସନ୍ ଆଉ ଆଠ ଦିନ ରହିଲା?

ନରି: ରହିଲା ଯେ- ସୁମନ୍ତ ମହାନ୍ତି କ'ଣ କରିବ?

ଭୀମା: ସିଏ ପରା ତମ ଦୋକାନରୁ ଚା' ପିଏ?

ନରି: ଦେଖିରେ ମଦନା... ବନ୍ଧାକୋବି ପାର୍ଟିର ପ୍ରଭାରୀ ଆସିଛନ୍ତି।

ମଦନା: (ସେଲୁନ୍‌ରେ କ୍ଷୁର ପଜେଇ ପଜେଇ) କିଏ ଆସିଛନ୍ତି ?

ନରି: ବନ୍ଧାକୋବି ପାର୍ଟିର ପ୍ରଭାରୀ।

ମଦନା: ସିଏ ପୁଣି କିଏ ?

ଭୀମା: ଆହେ ବନ୍ଧାକୋବି ପାର୍ଟିକୁ ଜାଣିଛ କି ନାଇଁ? ତମ ଗାଁ ଅରକ୍ଷିତ ଡାକୁଆ ଆମ ଓଡ଼ିଶା ପାର୍ଟିର ମୁଖ୍ୟ ଅଛନ୍ତି।

ମଦନା: ସିଏ ଆମ ଦାଦା ହିସାବ ହୁଅନ୍ତି ସାର୍!

ଭୀମା: ଅରକ୍ଷିତ ବାବୁକୁ କହିଦବ- ଏଥର ଦିଲ୍ଲୀ ଗଲାବେଳକୁ ମତେ ନେଇକି ଯିବେ... ମୁଁ ଭୀମା ବେହେରା ଆଜ୍ଞା! ଆମେ ହେଲୁ ବଜାବଜି ପାର୍ଟି!

ମଦନା: ସେଇଟା ପୁଣି କ'ଣ ସାର୍ ?

ଭୀମା: ଇଲେକ୍‌ସନ୍ ଆସୁଚି...ଯିଏ ଆମକୁ ଭୋଟ ନଦେଇ ଗଣ୍ଡଗୋଳ କରିବ, ତାକୁ ସାଇଜ୍ କରିବା ପାଇଁ ଆମେ ଅଛୁ। ଛାଡ଼, ସୁମନ୍ତ ମହାନ୍ତି ଘର ?

ମଦନା: ସାର୍, ଏଇ ଗାଁରେ ସାର୍! ସିଏ କିନ୍ତୁ ନାହାନ୍ତି ଏବେ।

ଭୀମା: କୁଆଡ଼େ ଯାଇଛନ୍ତି ?

ମଦନା: ସାର୍ ତାଙ୍କ ମାମୁ ଘରକୁ ଯାଇଛନ୍ତି- ଗୋପାଳପୁର। କ'ଣ ହେଲା କି ସାର୍? ତାଙ୍କ ପାଖରେ କାମ କ'ଣ ?

ଭୀମା: ଶଳା ମୋ' ନାଁରେ ଏଫ୍.ଆଇ.ଆର୍. ଦେଇଚି। ପୋଲିସ୍ ଷ୍ଟେସନରେ। ଶଳା ଜାଣିନି ଭୀମା ବେହେରାର ହାତ କେତେ ଲମ୍ବା, ସେଇ ଶଳାଟାକୁ ସାଇଜ୍ କରିବାକୁ ପଡ଼ିବ। ସେଇଥିପାଇଁ ବାଇକ୍ ନେଇ ଚାଲି ଆସିଚି। ଆସିଲେ କହିଦବ- ଏଫ୍.ଆଇ.ଆର୍. ୱିଥ୍‌ଡ୍ର କରିବ ନହେଲେ ମୁଥ ମାରି ଶଳାର ମୁହଁକୁ ଇଣ୍ଡିଆ ମେପ୍ ବନେଇ ଦେବି।

ମଦନା: ମଉସା! ଏଇଟା କ'ଣ ?

ଭୀମା: ଏୟ୍! ମଦନା! ଆମର ବନ୍ଧାକୋବି ଦଳର ନେତା ଅରକ୍ଷିତ ଡାକୁଆର ପୁତୁରା ବୋଲି ତତେ ଛାଡ଼ି ଦଉଚି। ହେଲେ ସୁମନ୍ତ ମହାନ୍ତିକୁ ଛାଡ଼ିବାର ପ୍ରଶ୍ନ ଉଠୁନି! କହ, ସୁମନ୍ତ ମହାନ୍ତିର ଘର କୋଉ ସାହିରେ? ବାଁ ପଟେ ଯିବାକୁ ହବ

ନା ଡାହାଣ ପଟେ ?

ମଦନା: ଡାହାଣ ପଟେ !

ଭୀମା: ନିଆଁ ଜଳିବ !

(ଆବହ ସଂଗୀତ, ଡାହାଣ ପଟେ ଚାଲିଗଲା ଭୀମା ବେହେରା। ମଞ୍ଚର ଆଲୋକ ପୁରା ଅନ୍ଧକାର ନହେଲେ ମଧ୍ୟ ଅନ୍ଧକାର ହେଲା। ଗୋଟାଏ ବିରାଟ ଶୋଭାଯାତ୍ରା ଯିବାର ଶବ୍ଦ ଶୁଭିଲା, ସେମାନେ ସ୍ଲୋଗାନ ଦେଉଥିଲେ।)

ସ୍ଲୋଗାନ୍‌ନେତା: ଚୁକ୍ତିଭିତ୍ତିକ ନିଯୁକ୍ତି !

ସମବେତ ସ୍ୱର: ଉଚ୍ଛେଦ କର !

ସ୍ଲୋଗାନ୍‌ନେତା: ଚୁକ୍ତିଭିତ୍ତିକ ନିଯୁକ୍ତି !

ସମବେତ ସ୍ୱର: ବନ୍ଦ କର ! ବନ୍ଦ କର !

ସ୍ଲୋଗାନ୍‌ନେତା: ବୁଲୁ ଭାଇ- ଜିନ୍ଦାବାଦ

ସମବେତ ସ୍ୱର: ଜିନ୍ଦାବାଦ (ଏଇ ଜିନ୍ଦାବାଦ ସ୍ଲୋଗାନ ଡାକି ଡାକି ଦଳେ କର୍ମଚାରୀ ମଞ୍ଚର ବାମ ପଟରୁ ଡାହାଣ ପଟକୁ ଚାଲିଗଲେ। ସେମାନେ ପୋଷ୍ଟର ମଧ୍ୟ ଧରିଥିଲେ। ମଞ୍ଚ ଅର୍ଦ୍ଧ ଆଲୋକିତ ରହିବ। ସେମାନେ ଚାଲିଗଲା ପରେ। ବର୍ତ୍ତମାନ ମଞ୍ଚ ଉପରେ ଭୀମା ଓ ତାର ସହଯୋଗୀ ଗୁଣ୍ଡାମାନେ)

ଭୀମା: ଅନେଇଚ କ'ଣ ବେ' ? ବମ୍ବିଂ କର। ଫୋପାଡ଼ ବୋମା।

ଗୁଣ୍ଡା-୧ : ହାତବୋମା ୨ଟା ଅଛି ଭୀମ ଭାଇ। ହେଲେ ସେ ସୁମନ୍ତ ମହାନ୍ତି କାଇଁ ?

ଭୀମା: ସୁମନ୍ତ ଯା' ଭିତରେ ? ମାର ଶଳାକୁ (ହଠାତ୍ ପ୍ରବେଶ କଲେ ଏ.ଏସ୍.ଆଇ.। ଭୀମାକୁ ଦେଖି ଚିତ୍କାର କଲେ)

ଏ.ଏସ୍.ଆଇ.: ଏ' ଭୀମା ! ଯା' ଏଇଠୁ ! (ହୁଇସିଲ୍ ମାରିଲେ- ସେମାନେ ଚାଲିଗଲେ। ପ୍ରବେଶ କଲା ସୁମନ୍ତ ମହାନ୍ତି। ତା' ହାତରେ ଗୋଟେ ବିରାଟ ପତାକା। ପତାକା ଧରି ସେ ସ୍ଲୋଗାନ ଦେଉଥିଲା।)

ସୁମନ୍ତ: ଠିକା ଚାକିରି ବନ୍ଦ କର !

(ପ୍ରଚ୍ଛଦପଟରୁ ଶୁଭିଲା ଉତ୍ତର)

ଠିକା ଚାକିରି ବନ୍ଦ କର ! (ଡାକି ଡାକି ଚାଲିଗଲା ସୁମନ୍ତ।

ପ୍ରଚ୍ଛଦପଟରୁ ଶୁଭିଲା ଉତ୍ତର। ପ୍ରବେଶ କଲେ ଭୀମା ଓ ତିନି ଜଣ ଗୁଣ୍ଡା)

ଗୁଣ୍ଡା-୧ : ହେଇ ଶଳା ସୁମନ୍ତ ମହାନ୍ତି, ପତାକାଟେ ଧରିଚି।

ଭୀମା: ମାର୍ ଶଳାକୁ! (ପୁଣି ଥରେ ପ୍ରବେଶ କଲା ଏ.ଏସ୍.ଆଇ.। ସେ ବାରମ୍ବାର ହୁଇସିଲ୍ ମାରି ମଞ୍ଚର ବାମ ପଟରୁ ଡାହାଣ ପଟକୁ ଚାଲିଗଲା।)

(ବୋମା ଫୋପାଡ଼ିଲା ଗୁଣ୍ଡା-୨ ଏବଂ ଭୟଙ୍କର ବିସ୍ଫୋରଣ ସହିତ ମଞ୍ଚ ଅନ୍ଧାର ହେଲା। ଅନ୍ଧାରରେ ଦୁଇ ଚାରିଟା ବୋମା ଫୁଟିବାର ଶବ୍ଦ। ଆବହ ସଂଗୀତ ଗମ୍ଭୀର। ସ୍ପଟ୍ ଆଲୁଅରେ ଦେଖାଗଲା ରକ୍ତାକ୍ତ ଅବସ୍ଥାରେ ସୁମନ୍ତ ଘୁଷୁରି ଘୁଷୁରି କେନ୍ଦ୍ର ମଞ୍ଚକୁ ଆସିଚି। ମଞ୍ଚ ଉପରେ ସିଏ ଧରିଥିବା ପତାକାଟି ପଡ଼ିଚି। ସୁମନ୍ତ ପତାକାଟିକୁ ଉଦ୍ଧାର କରିବା ପାଇଁ ଚେଷ୍ଟା କରୁଚି। ପାରୁନି। ପଡ଼ିଯାଉଚି। ପତାକାଟିକୁ ଧରି ଘୋଡ଼େଇ ହେଇପଡୁଚି। ପ୍ରବେଶ କଲେ ଭୀମା ଓ ଗୁଣ୍ଡା ତିନି ଜଣ। ସୁମନ୍ତକୁ ଦେଖିପାରିଲେ ନାହିଁ।)

ଭୀମା: କୁଆଡ଼େ ଗଲା ଶଳା ବିପ୍ଳବୀ?

ଗୁଣ୍ଡା: ଯେତେଦୂର ସମ୍ଭବ- ଫିନିସ୍!

ଭୀମା: ଡେଡ୍ ବଡ଼ି କାଇଁ?

ଗୁଣ୍ଡା-୨ : ଦଶ ବାର ଜଣ ମରିଛନ୍ତି। ସେଇଠି ପଡ଼ିଛନ୍ତି ପଡ଼ିଆରେ।

ଭୀମା: ଚାଲ! ଡେଡ୍ ବଡ଼ି ଦରକାର।

ଗୁଣ୍ଡା-୧ : ଡେଡ୍ ବଡ଼ି କ'ଣ ହବ ଭାଇ? ପୁଲିସ୍ ଆସିବ। ଚାଲ ପଳେଇବା- ଏଇଠି ରହିବା ନିରାପଦ ନୁହେଁ।

(ସେ ତିନିଜଣ ପଳେଇଗଲେ। ବର୍ତ୍ତମାନ ପ୍ରବେଶ କଲେ ଫୁଲକୋବି ପାର୍ଟିର ନେତା ବୁଲୁଭାଇ ୨/୩ ଜଣ କର୍ମୀ ଓ ପୋଲିସ୍ ଏ.ଏସ୍.ଆଇ.। ପତାକାଟି ତଳେ ପଡ଼ିଥିବା ଦେଖି ଅଟକି ଗଲେ।)

ବୁଲୁଭାଇ: ଏଇ ଦେଖନ୍ତୁ ସାର୍! ବନ୍ଧାକୋବିବାଲା ଆମ ପତାକାଟିକୁ ଚିରି ଫୋପାଡ଼ି ଦେଇଛନ୍ତି। (କର୍ମୀମାନଙ୍କୁ) ପତାକାଟାକୁ ଉଠେଇ ଆଣ।

(କର୍ମୀମାନେ ପତାକା ଉଠେଇଲା ପରେ ପରୀକ୍ଷା କରି ଦେଖିଲେ ସୁମନ୍ତ ଅର୍ଦ୍ଧମୃତ ଅବସ୍ଥାରେ ରାସ୍ତା ଉପରେ ସୁକୁସୁକୁ ହଉଚି ।)

ବୁଲୁଭାଇ: ଆବେ ବଞ୍ଚିଚି ବେ ! ପାଣି ଟିକିଏ ଆଣ, ସାମ୍ବାଦିକ ବାବୁ... ପାଣି ଅଛି ?

(ସାମ୍ବାଦିକ ପାଣି ବୋତଲ ଦେଲା ଓ ସୁମନ୍ତ ମୁହଁରେ ଛିଟା ପକେଇଲା । ଆବହ ସଂଗୀତ । କ୍ରମଶଃ ସୁମନ୍ତର ଚେତା ଆସିଲା ।)

ସାମ୍ବାଦିକ: ବର୍ତ୍ତମାନ ୟା'ଙ୍କୁ ହସ୍‌ପିଟାଲ୍ ନବାକୁ ପଡ଼ିବ । ତା' ଆଗରୁ ୟା'ଙ୍କର ଦୁଇ ଗ୍ଟରିଟା ଫଟୋ ଉଠାଇଦବା । (ବର୍ତ୍ତମାନ ସେ ଫଟୋ ଉଠାଇବାରେ ଲାଗିଲେ) ଆଜ୍ଞା ଆପଣଙ୍କ ନାଁ ?

ସୁମନ୍ତ: ସୁମନ୍ତ ମହାନ୍ତି ।

ସାମ୍ବାଦିକ: ଘର ? ଘର କୋଉଠି ?

ସୁମନ୍ତ: ବାହାଡ଼ାଗୁଡ଼ା ।

ସାମ୍ବାଦିକ: ସେଗୁଡ଼ାକ ପଛେ । ବର୍ତ୍ତମାନ ତାଙ୍କୁ ଧରନ୍ତୁ, ପ୍ରଥମେ ହସ୍‌ପିଟାଲ୍ ନେଇଯିବା । ଦେଖିଲ ଗାଡ଼ି ଡିକିରେ ଗୋଟେ ଫୋଲ୍‌ଡ଼ିଙ୍ଗ୍ ଷ୍ଟ୍ରେଚର୍ ଥିଲା ।

(ବୁଲୁଭାଇ ଯାଇ ଗୋଟେ ଷ୍ଟ୍ରେଚର ଆଣିଲେ ଓ ସେମାନେ ସୁମନ୍ତକୁ ଷ୍ଟ୍ରେଚର୍‌ରେ ହସ୍‌ପିଟାଲ୍ ନେଇଗଲେ ।)

(ମଞ୍ଚ ଅନ୍ଧାର)

# ଅଷ୍ଟମ ଦୃଶ୍ୟ

(ଅରକ୍ଷିତ ଡାକୁଆ ଚା' ପିଉଛନ୍ତି ନରି ସାହୁ ଦୋକାନରେ ।)

ନରି: ସମସ୍ତେ ତମକୁ ହିଁ ଦାୟୀ ବୋଲି କହୁଛନ୍ତି ସାର୍! ସୁମନ୍ତଟା ଆମ ଗାଁ ପିଲାଟା । ମାଟ୍ରିକ୍ ପାଶ୍ କରିଚି । ତା'ଉପରକୁ ବୋମା ମାଡ଼ କରୁଥିଲ କାହିଁକି ?

ଅରକ୍ଷିତ: କିଏ ବୋମା ମାରିଲା ତାକୁ? କିହୋ ମୁଁ କିଏ ସେ ଟୋକା କିଏ ?

ନରି: ସମସ୍ତେ ଦେଖିଛନ୍ତି- ତମ ବନ୍ଧାକୋବି ପାର୍ଟିର ସଭ୍ୟମାନେ ଏ କାଣ୍ଡ କରିଛନ୍ତି । ଖବରକାଗଜରେ ବାହାରିଚି ।

ଅରକ୍ଷିତ: କ'ଣ ପ୍ରମାଣ ?

ନରି: ପ୍ରମାଣ କ'ଣ ସାର୍? ସେ ଭୀମା ବେହେରା ପରା ତିନିଟା ଗୁଣ୍ଡା ନେଇ ଏଇଠି ପଇଁତରା ମାରୁଥିଲା! ଆମେ ସମସ୍ତେ ଦେଖିଚୁ ?

ମଦନା: ଦାଦା! ମୁଁ ଦେଖିଚି ସେମାନେ ହାତ ବୋମା ଫୋପାଡୁ ଥିଲେ ।

ଅରକ୍ଷିତ: ସେମାନେ ସେଇ ଫୁଲକୋବି ପାର୍ଟିର। ସେଗୁଡ଼ା ଅତି

ଉଦ୍‌ବାର୍ଯ୍ୟ ହେଲେଣି। ଆମ ଶାସକ ଦଳକୁ ଜମା ଖାତିର ନାହିଁ। ଗଭର୍ଣ୍ଣରଙ୍କୁ ଜମା ଖାତିର ନାଇଁ। ଆଇନ୍‌କୁ ଖାତିର ନାଇଁ। ସବୁ ଫୁଲ୍‌କୋବି ପାର୍ଟିର କାର୍‌ନାମା।

ନରି: ଫୁଲ୍‌କୋବି ପାର୍ଟି କିଏ କଲା ସାର୍? କେବେଠୁ ହେଲାଣି?

ଅରକ୍ଷିତ: ମୁଁ ଯୋଉଦିନଠୁ ବନ୍ଧାକୋବି ଦଳର ରାଜ୍ୟ ପ୍ରଭାରୀ ହେଲି, ବୁଲୁ ଗୋଟେ ଫୁଲକୋବି ଦଳ ଗଢ଼ିଲା। ଏବେ ଦେଶରେ ଖାଲି କୋବି ତରକାରୀ ହବ। (ବୁଲୁଭାଇ ଆସି ପହଞ୍ଚିଲେ) ହେଇ ବୁଲୁ ଆସିଲାଣି। କିରେ ବୁଲୁ! ଠିକା କର୍ମଚାରୀ ଶୋଭାଯାତ୍ରାରେ ତମେ ସବୁ କ'ଣ ବୋମା ଫୁଟୋଉଥିଲ? ମୁଁ ଥାନାରେ ଏଫ୍.ଆଇ.ଆର୍. ଦେବି।

ବୁଲୁ: ଦିଅନ୍ତୁ ସାର୍! ଆପଣ ବନ୍ଧାକୋବି ପାର୍ଟିର ରାଜ୍ୟ ପ୍ରଭାରୀ, କୋଡ଼ିଏ ବର୍ଷ ହେଲା ପାୱାରରେ ଅଛନ୍ତି। ପୋଲିସ୍ ଆପଣଙ୍କ ହାତରେ।

ଅରକ୍ଷିତ: କୋଡ଼ିଏ ବର୍ଷ ହେଲା କ'ଣ ଖାଲିଟାରେ ପାୱାରରେ ଅଛୁ? ବନ୍ଧାକୋବି ପାର୍ଟିରେ ସେମିତି ଏକତା ଅଛି। ତା'ଛଡ଼ା ବୁଲୁବାବୁ, ଏ ଦେଶରେ ମଜବୁତ୍ ବିପକ୍ଷ ଦଳ କାହାନ୍ତି?

ବୁଲୁ: ବିପକ୍ଷ ଦଳ ନାହାନ୍ତି ତ କାଲି ଏତେ ବଡ଼ ଶୋଭାଯାତ୍ରା ବାହାରିଲା କେମିତି? ଦେଢ଼ ହଜାର ଲୋକ ଥିଲେ ଆମର ଫୁଲକୋବି ପାର୍ଟିରେ।

ଅରକ୍ଷିତ: ଫୁଲକୋବି କ'ଣ? ଆଉ ଗୋଟେ ଭଲ ନାଁ ମିଳିଲାନି? ବନ୍ଧାକୋବିର କପି କରା ହେଇଚି।

ବୁଲୁ: ସେଇଟା ସାଧାରଣ ଲୋକ ତରକାରୀ କରି ଖାଇଲେ ଜଣା ପଡ଼ିବ କୋଉଟା ସୁସ୍ୱାଦୁ।

ଅରକ୍ଷିତ: ଆଉ ସୁସ୍ୱାଦୁ ପର୍ଯ୍ୟନ୍ତ କଥା ଯିବ ନା ଲୋକେ ତରକାରୀ ଖାଇବେ?

ବୁଲୁ: ମୂଳଦୁଆ ଦୋହଲିଗଲା କାଲି। ପ୍ରାଣ ବିକଳରେ ଆମ ଉପରକୁ ହାତ ବୋମା ଗ୍ରେନେଡ୍ ଫୋପାଡୁଥିଲ। ଏବେ କହୁଚ ଆମେ ବୋମା ପକାଉଥିଲୁ?

ଅରକ୍ଷିତ: ଶାସକ ଦଳ ବୋମା ପକାଉଥିଲେ? କାରଣ କ'ଣ

ହୋଇପାରେ ? ପ୍ରମାଣ କ'ଣ ?

ବୁଲୁ: ପ୍ରମାଣ ହସ୍‌ପିଟାଲ୍‌ରେ। ସୁମନ୍ତ ମହାନ୍ତି- ଏ ଗାଁର ନିରୀହ ପିଲାଟା ପାଁ'ଶ ଟଙ୍କା ପାଇବ ବୋଲି ଶୋଭାଯାତ୍ରାରେ ବାହାରିଥିଲା। ତା'ର ଅବସ୍ଥା ସଙ୍କଟାପନ୍ନ। ହସ୍‌ପିଟାଲ୍‌ରେ ପଡ଼ିଚି।

ମଦନା: ବିଚରା ! ସୁମନ୍ତଟାକୁ ସମସ୍ତେ ମାରୁଛନ୍ତି। ଏକଦମ୍ ବଢ଼ିଆ ପିଲା ଦାଦା ! ତାକୁ କାଇଁକି ମାରୁଥିଲ ? ଆମ ଛକର ଟୋକା।

ଅରକ୍ଷିତ: ଆରେ ଶୋଭାଯାତ୍ରା କଥା। ହାତ ବୋମା, ଗ୍ରେନେଡ୍ ଫୋପଡ଼ା ଫୋପଡ଼ି, ତା' ଭିତରେ ପଶିଥିଲା କାଇଁକି ?

ନରି: କେମିତି ଅଛି ବୁଲୁବାବୁ ? ଚାଲ ଟିକିଏ ଦେଖି ଆସିବା କ'ଣ ହେଇଚି।

(ସମସ୍ତେ ଚାଲିଗଲେ)

# ନବମ ଦୃଶ୍ୟ

ଗୋଟେ ହ୍ୱିଲ୍ ଚେୟାର ଉପରେ ମୁଣ୍ଡ ଓ ଦେହସାରା ବ୍ୟାଣ୍ଡେଜ୍ ହେଇ ବସିଥିବା ସୁମନ୍ତ ମହାନ୍ତିଙ୍କୁ ଆଣିଲେ ପୀତାମ୍ବର କାନୁନ୍‌ଗୋ।

ପୀତାମ୍ବର: କ'ଣ ଦରକାର ଥିଲା ଆମର? ଏ ଶୋଭାଯାତ୍ରାରୁ କ'ଣ ମିଳୁଥିଲା ଆମକୁ? ବୋଉ ତୋ'ର ବ୍ୟସ୍ତ ହଉଚି। ମାଇଁ ବ୍ୟସ୍ତ। ଅଗତ୍ୟା ଆସିଲି।

(ଜଣେ ସାମ୍ବାଦିକ (ସାମ୍ବାଦିକ-୧)ପ୍ରବେଶ କଲେ ଏବଂ ପୀତାମ୍ବରଙ୍କୁ କହିଲେ.. )

ସାମ୍ବାଦିକ: ଆପଣ ଯିବେ ଯଦି ଯାଆନ୍ତୁ ସାର୍! ଆମେ ଅଛୁ। ବୁଲୁ

ଭାଇ ଆସିବେ। ଏ ନର୍ସିଂହୋମ୍‌ର ମାଲିକ ବୁଲୁଭାଇଙ୍କ ସାଙ୍ଗ। ଯାହା କରିବା କଥା ବୁଲୁ ଭାଇ କରିବେ।

ପୀତାମ୍ବର: ଠିକ୍ ଅଛି। ତେବେ ଆପଣ ଯୋଉ ବୁଲୁ ଭାଇ କଥା କହୁଛନ୍ତି- ସେ ବୁଲୁ ଭାଇଟି କିଏ ?

ସାମ୍ବାଦିକ-୧ : ବୁଲୁ ଭାଇ କି ଜାଣିନାହାନ୍ତି ? ଫୁଲକୋବି ପାର୍ଟିର ମୁଖିଆ। କୋଡ଼ିଏ ବର୍ଷ ଶାସନ କାଳ ଭିତରେ ଯେତେସବୁ ଦୁର୍ନୀତି କରି ବନ୍ଧାକୋବି ଦଳ ଏ ଦେଶକୁ ଖୋଳ କରୁଛନ୍ତି, ବୁଲୁ ଭାଇ ସେଇ ଦୁର୍ନୀତିର ଚେରଗୁଡ଼ାକ ଉପାଡୁଛନ୍ତି।

ପୀତାମ୍ବର: ଆପଣ କିଏ ? ବୁଲୁ ଭାଇଙ୍କ ଚେଲା ?

ସାମ୍ବାଦିକ-୧ : ନାହିଁ ସାର୍, ମୁଁ ଜଣେ ସାମ୍ବାଦିକ। ମୁଁ ସମସ୍ତଙ୍କ ପାଖକୁ ଯାଇ ନିଉଜ୍ ଷ୍ଟୋରୀ ତିଆରି କରେ। ଆମ ପାଇଁ ବନ୍ଧାକୋବି ପାର୍ଟିର ଅରକ୍ଷିତ ଡାକୁଆ ଯେତିକି- ଫୁଲକୋବି ପାର୍ଟିର ବୁଲୁଭାଇ ସେତିକି !

ପୀତାମ୍ବର: ଏଇଠିକି କ'ଣ ଚାଲିଆସିଲେ ?

ସାମ୍ବାଦିକ: ମୁଁ ଏଇ ବାବୁଙ୍କ ଖବରଟା ଛାପିବି କାଲିର କାଗଜରେ। ଦି' ଚାରିଟା କଥା ପଚାରିବାର ଥିଲା- ଆପଣ ଠିଆ ହୁଅନ୍ତୁ, ମୁଁ ଗୋଟେ ସ୍ନାପ୍ ନିଏ ଏ ବାବୁଙ୍କର ! ଏଇଟା ଗୋଟେ ସାଂଘାତିକ ଖବର। ନୁହେଁ ସାର୍ ?

ପୀତାମ୍ବର: ସାଂଘାତିକ ନୁହେଁ କ'ଣ ହେ ? ବାପା ସିଆଡ଼େ ମସ୍ତି କରୁଚି... ମା'ଟା ଘରେ କାନ୍ଦି କାନ୍ଦି ଅଥୟ ହେଇ ବସିଚି, ଏଣେ ଯା' ଉପରକୁ ବୋମା ମାଡ଼ ?

(ହଠାତ୍ ପ୍ରବେଶ କଲେ ବୁଲୁ ଭାଇ। ସାଙ୍ଗରେ ସାମ୍ବାଦିକ-୨। ତାଙ୍କ ହାତରେ ଫୁଲକୋବି ପତାକା)

ବୁଲୁଭାଇ: ଆରେ ! ପୀତାମ୍ବର କାନୁନ୍‌ଗୋ ବାବୁ- ଆପଣ ଏଇଠି ?

ପୀତାମ୍ବର: ଆଜ୍ଞା ମୋର ଭଣଜା ! ଗୋଟିଏ ବୋଲି ଭଣଜା ସାର୍ ! ମାଟ୍ରିକ୍ ପାଶ୍ କରିଚି। ରାଇସ୍ ମିଲ୍‌ରେ ଚାକିରି କରେଇ ଦେଇଥିଲି। ତାକୁ ତମେ ଡାକିନେଇ ଶୋଭାଯାତ୍ରାରେ ମିଶେଇ ଦେଲ। ଏବେ ବଞ୍ଚିବ କେମିତି ମୋ' ଭଣଜା ? ବଞ୍ଚିବ କେମିତି ତା'ର ମା' ? ମୋ' ସାନ ଭଉଣୀର ସଂସାର

ଉଜୁଡ଼ି ଗଲା ବୁଲୁ ବାବୁ।

ବୁଲୁଭାଇ: ମୋ' ଉପରେ କ'ଣ ଦୋଷ ଲଦି ଦଉଛ ପୀତାମ୍ବର ବାବୁ? ମୁଁ ତାକୁ କେବେ ଦେଖିନି କି ଚିହ୍ନିନି।

(ପ୍ରବେଶ କଲେ ଏ.ଏସ୍.ଆଇ.। ତାଙ୍କୁ ଦେଖୁଦେଖୁ ଖେଦି ଉଠିଲେ ବୁଲୁଭାଇ)

କୁଆଡ଼େ... କୁଆଡ଼େ ପୋଲିସ୍ ବାବୁ? କୋଉଠି ଥିଲ ତମେ କାଲି ରାତିରେ?

ଏ.ଏସ୍.ଆଇ: ଖବର ପାଇ ଥାନା ଛାଡ଼ି ସାଙ୍ଗେ ସାଙ୍ଗେ ଆସୁଚି ଏଇଟା କିଏ? (ପାଖକୁ ଯାଇ) ଓ... ତମେ? ଗୋପାଳପୁର ସୁମନ୍ତ ମହାନ୍ତି? କିଏ ମାଇଲା ତମକୁ? ମୁହଁଟା ଇଣ୍ଡିଆ ମେପ୍ ହେଇଯାଇଛି। (ହସିଲା) ଶଳା ଭୀମା ଗୁଣ୍ଡା ଆଉ ତା' ଗ୍ୟାଙ୍ଗ୍‌ର କାଣ୍ଡ ଏଇଟା!

ବୁଲୁଭାଇ: କୋଉ ଭୀମା ଗୁଣ୍ଡା? ସିଏ ତ ତମ ଲୋକ। ପ୍ରତି ମାସରେ ତମକୁ ବଟି ଦଉଚି।

ପୀତାମ୍ବର: ତା'ମାନେ ପୋଲିସ୍ ବାବୁ! ତମେ ମାରିଚ ମୋ' ଭଣଜାକୁ?

ଏ.ଏସ୍.ଆଇ: କି ଆଶ୍ଚର୍ଯ୍ୟ କଥା! ମୁଁ କାଇଁକି ମାରିବି? ମୁଁ ୟାଙ୍କୁ ଭଲ ଭାବେ ଜାଣେ। ଇଏ ସେଇ ମଦୁଆ ସିଲିଣ୍ଡର ବାଲା ବିଶି ମହାନ୍ତିର ପୁଅ ସୁମନ୍ତ!

ବୁଲୁଭାଇ: ବନ୍ଧାକୋବି ପାର୍ଟିର ଗୁଣ୍ଡା ତମେ ପୋଲିସ୍ ବାବୁ! ଶୋଭାଯାତ୍ରାକୁ ଅଟକାଇବା ପାଇଁ ତମେ ଦମ୍‌କଳରୁ ପାଣି ମାଡ଼ କଲ- ହେଲାନି। ଲୁହବୁହା ଗ୍ୟାସ୍ ମାଇଲ- ହେଲାନି। ଶେଷକୁ ବ୍ଲାଙ୍କ୍ ଫାୟାର୍ କଲ- ଲାଠି ଚାର୍ଜ କରି ଟୋକାଟାକୁ ମର୍ଡ଼ର କରୁଥିଲ!

ଏ.ଏସ୍.ଆଇ: ଏଗୁଡ଼ା ମିଛ କଥା। ସମ୍ପୂର୍ଣ୍ଣ ମନଗଢ଼ା କଥା- ତମ ଫୁଲକୋବି ଲୋକେ ପୋଲିସ୍ ଭ୍ୟାନ୍‌ରେ ନିଆଁ ଲଗେଇଚ!

ବୁଲୁଭାଇ: ତମେ ନିଜେ ନିଜେ ତମ ଗାଡ଼ିରେ ନିଆଁ ଲଗେଇଚ। ଆମେ ନିଜ ଆଖିରେ ଦେଖିଚୁ।

ସାମ୍ବାଦିକ: ବୁଲୁ ଭାଇ ଠିକ୍ କହୁଚନ୍ତି ପୋଲିସ୍ ବାବୁ! ଆମ ପାଖରେ

ଫଟୋ ଅଛି। ସି.ସି. ଟିଭି ଫୁଟେଜ୍ ଆମେ ଦେଖି ସାଇଲୁଣି।

ଏ.ଏସ୍.ଆଇ: ଥାନାକୁ ଚାଲ। ତମେ କୋଉ କାଗଜ ପାଇଁ ଲେଖୁଚ? ଇଆଡୁ ସିଆଡୁ ଲେଖିଲେ ହାଜତରେ ପୁରେଇ ଖୋବିବି- କୋଉ ଶଳା ପିଠିରେ ପଡ଼ିବ- ଦେଖିବି!

ବୁଲୁଭାଇ: ବନ୍ଧାକୋବି ପାର୍ଟିର ଗୁଣ୍ଡା ତମେ! ଶୋଭାଯାତ୍ରା ଉପରକୁ ଫାୟାରିଂ କଲ କାହିଁକି? କାଲି ଭାଗ୍ୟ ଭଲ ଏ ଟୋକାର, ମୋ' ହାବୁଡ଼ରେ ପଡ଼ିଗଲା। ମୁଁ ଆଣି ତାକୁ ଏ ନର୍ସିଂହୋମ୍‌ରେ ଭର୍ତ୍ତି କରିଚି। ନହେଲେ ସିଏ ଶହୀଦ ହେଇଯାଇଥା'ନ୍ତା... ଏଡ଼େ ଲ' ଆଣ୍ଡ୍ ଅର୍ଡ଼ର ମେଣ୍ଟେନ୍ କଲା ବାଲା? ଆମେ ତମର ବନ୍ଧାକୋବି ହୋମ୍ ମିନିଷ୍ଟରକୁ ଯାର ଜବାବ ମାଗିବୁ।

ଏ.ଏସ୍.ଆଇ: ମୁଁ ବର୍ତ୍ତମାନ ପରୀକ୍ଷା କରିବି ଯାର କ'ଣ ହେଇଚି।

ପୀତାମ୍ବର: ତମେ କିଏ ପରୀକ୍ଷା କଲା ବାଲା? ମୋ' ଭଣଜାର କ'ଣ କ୍ଷତି ହେଇଚି ତମେ ପରୀକ୍ଷା କରିବ?

ଏ.ଏସ୍.ଆଇ: ଏଇଟା ପୋଲିସ୍ କେସ୍ ହବ। କୋର୍ଟକୁ ଯିବ।

ପୀତାମ୍ବର: ସେଇଟା ଡାକ୍ତର ପରୀକ୍ଷା କରିସାରି ଇଂଜୁରି ରିପୋର୍ଟ ପଠେଇ ଦେଲେଣି। ତମେ ଥାନାକୁ ଗଲେ ପାଇଯିବ। ବର୍ତ୍ତମାନ ତମେ ମୋ' ଭଣଜା ଦେହରେ ହାତ ମାରି ପାରିବନି- ଯାଅ- ଶୀଘ୍ର ଏଇଠୁ ବିଦା ହୁଅ।

ବୁଲୁଭାଇ: ଆପଣ ବି ଯାଆନ୍ତୁ ପୀତାମ୍ବର ବାବୁ। ସୁମନ୍ତ ଭଲ ହେବା ଦାୟିତ୍ୱ ମୋର। ମୁଁ ତାକୁ ରାସ୍ତା ଉପରୁ ଉଠେଇ ଆଣି ନର୍ସିଂହୋମ୍‌ରେ ଭର୍ତ୍ତି କରିଚି।

ପୀତାମ୍ବର: ଆମେ ସେଥିପାଇଁ କୃତଜ୍ଞ ବୁଲୁ ବାବୁ। କେତେ ଖର୍ଚ୍ଚ ହେଲା ମତେ ଖାଲି ବିଲ୍‌ଟା ଦେବେ। ଯାହା ଖର୍ଚ୍ଚ ହବ ମୁଁ ଦେବି।

ବୁଲୁଭାଇ: ନାଇଁ ପୀତାମ୍ବର ବାବୁ! ସୁମନ୍ତକୁ ଭଲ କରିବା ଆମ ଫୁଲକୋବି ପାର୍ଟିର ଦାୟିତ୍ୱ। ଆପଣ ଘରକୁ ଯାଆନ୍ତୁ। (ପୀତାମ୍ବର ବାବୁ ଗଲା ପରେ ସାମ୍ବାଦିକ-୨ କାଖରେ ଦାବିଥିବା ଗୋଟେ ଗଣ୍ଠିଲି ବାହାର କଲେ। ଖୋଲିବାରୁ ଜଣାଗଲା ସେଇଟା ଗଣ୍ଠିଲି ନୁହେଁ, ନୀଳ ରଙ୍ଗର ଗୋଟେ

ପତାକା। ତା'ଉପରେ ସେଇଟାକୁ ଖୋଲି ଧରିଲେ।
(ସାମ୍ବାଦିକ-୨ ସୁମନ୍ତଙ୍କୁ ପଚାରିଲେ )

ସାମ୍ବାଦିକ-୨ : ସୁମନ୍ତ ବାବୁ! ସେଦିନ କ'ଣ ହେଇଥିଲା ଆକ୍‌ଚୁଆଲି ?

ସୁମନ୍ତ: ମାଡ଼! ପ୍ରବଳ ମାଡ଼ ହେଲା ମୋ' ଉପରେ।

ସାମ୍ବାଦିକ: କିଏ ମାରିଲା ? ପୋଲିସ୍ ?

ସୁମନ୍ତ: ନାଇଁ ଭୀମା ବୋଲି ଗୋଟେ ଗୁଣ୍ଡା। ତା' ସାଙ୍ଗରେ ଆହୁରି ତିନି ଚାରିଜଣ- ଗହଳି ଭିତରେ ମାରିଦେଇ ଚାଲିଗଲେ। ତା'ପରେ ବୋମା ମାଡ଼ କଲେ। ଗ୍ରେନେଡ୍ ଗୋଟେ ପାଖରେ ଫୁଟିଲା ବୋଧେ- ମୁଁ ମୂର୍ଚ୍ଛା ହେଇ ତଳେ ପଡ଼ିଗଲି।

ସାମ୍ବାଦିକ-୧ : ଏ ପତାକାଟା କୋଉଠୁ ଆଣିଲେ ?

ସୁମନ୍ତ: ମୁଁ ମୂର୍ଚ୍ଛା ହୋଇ ରାସ୍ତା କଡ଼ରେ ପଡ଼ିଚି। କିଛି ଲୋକ ଗାଡ଼ିରୁ ଓହ୍ଲାଇ ମୋ' ଉପରେ ପରିସ୍ରା କଲେ। ଭାଗ୍ୟ ଭଲ ମୋର ଚେତା ଆସିଗଲା।

ସାମ୍ବାଦିକ-୨ : ସେଇଠୁ ?

ସୁମନ୍ତ: ଶୀତ ଲାଗିଲା। ଦେଖିଲି ଏ ପତାକାଟା ତଳେ ପଡ଼ିଚି। ହାତ ବଢ଼େଇଲି। ଟାଣି ଆଣି ଘୋଡ଼େଇ ହେଇପଡ଼ିଲି।

ବୁଲୁଭାଇ: ନାଇଁ ନାଇଁ ନାଇଁ, ସାମ୍ବାଦିକ ବାବୁ! ଏ ଷ୍ଟୋରୀଟା ଏମିତି ଲେଖାହବ ନାଇଁ। ପାର୍ଟିର ପତାକା ଉପରେ ପୁଣି ପରିସ୍ରା ?

ସାମ୍ବାଦିକ-୨ : ଆଉ ?

ବୁଲୁଭାଇ: ଫୁଲକୋବି ପାର୍ଟି ପାଓ୍ୱାରରେ ନ ଥାଇପାରେ। କିନ୍ତୁ ସେ ଅଦମ୍ୟ। ଫୁଲକୋବି ପାର୍ଟିର ଏକମାତ୍ର ଏଜେଣ୍ଡା ହେଲା ବନ୍ଧାକୋବି ପାଟିକୁ ସିଂହାସନରୁ ବିତାଡ଼ିତ କରିବା।

ସାମ୍ବାଦିକ-୨ : ତା' ତ କରିବେ... କିନ୍ତୁ ନ୍ୟୁଜ୍ ଷ୍ଟୋରୀଟା କ'ଣ ହବ ?

ବୁଲୁଭାଇ: ଷ୍ଟୋରୀଟା ହେଲା ସୁମନ୍ତ ମହାନ୍ତି ଫୁଲ୍‌କୋବି ଦଳର ଜଣେ ସାଧାରଣ କର୍ମୀ ହୋଇଥିଲେ ମଧ୍ୟ ପ୍ରତିଦିନ ଫୁଲକୋବି ପତାକା ଧରି ସ୍ଲୋଗାନ ଦେଇ ଦେଇ ଜନପଥରେ ଯାଆନ୍ତି। ଏପରି କରିବା ଦ୍ୱାରା ତାଙ୍କୁ ବଞ୍ଚିବାର ପ୍ରେରଣା ମିଳେ। ସେଦିନ ସଂଧ୍ୟାରେ ସ୍ଲୋଗାନ ଦେଇ ଯାଉଥିବାବେଳେ ଗୋଟିଏ ଝିଅର ଆକୁଳ ଚିତ୍କାର ଶୁଣିଲେ। ଝିଅଟି ଚିତ୍କାର

କରୁଥିଲା- (ଗୋଟିଏ ଝିଅର ବିକଳ ଚିତ୍କାର ଶୁଭିଲା। ଝିଅଟି କହୁଥିଲା: ବଞ୍ଚାଅ, ବଞ୍ଚାଅ- କିଏ କୋଉଠି ଅଛ ବଞ୍ଚାଅ)

ବୁଲୁଭାଇ: ସୁମନ୍ତ ମହାନ୍ତି ଦେଖିଲେ, ଦଳେ ଯୁବକ ଗୋଟେ ଝିଅକୁ ଅନ୍ଧାରିଆ ଜାଗାରେ ଗଣ ବଳାତ୍କାର କରୁଛନ୍ତି। ଝିଅଟିର ଶାଢ଼ି ଖୋଲି ଯାଇଚି- ବ୍ଲାଉଜ ଚିରି ଯାଇଚି। ଫୁଲକୋବି ପାର୍ଟିର କର୍ମୀ ନାରୀ ଜାତିର ଇଜ୍ଜତ ରକ୍ଷା କରିବାକୁ ଡେଇଁ ପଡ଼ିଲେ ବିପଦ ଭିତରକୁ। ପ୍ରଥମେ ପାର୍ଟିର ପତାକାରେ ଘୋଡ଼େଇ ପକେଇଲେ ଝିଅଟିର ନଗ୍ନ ଦେହକୁ। (ଆବହ ସଙ୍ଗୀତରେ ଉତ୍କଣ୍ଠାର ସଙ୍କେତ। ହଠାତ୍ ମଞ୍ଚ ଅନ୍ଧାର)

# ଦଶମ ଦୃଶ୍ୟ

(ଆସିଲା ମଦନା ବାରିକ ଦୋକନରେ। ମଦନା ଖବରକାଗଜ ପଢୁଥିଲା।)

ମଦନା: ନରି ମଉସା ଶୁଣ ! ଖବରକାଗଜରେ ବାହାରିଚି ଆମ ସୁମନ୍ତ ମହାନ୍ତି- ବବ୍‌ଲୁ ବିଷୟରେ !

ନରି: କିଏ... ? ଆମ ବିଶ୍ୱାମିତ୍ରର ପୁଅ ସୁମନ୍ତ ? କ'ଣ କରିଚି ?

ମଦନା: (ଖବରକାଗଜରୁ ପଢ଼ିଲା) ଅସହାୟ ଝିଅଟି ଗଣ ବଳାତ୍କାରର ଶିକାର ହୋଇ ବିକଳ ଚିତ୍କାର କରୁଥିଲା। (ଆବହ ସଙ୍ଗୀତ) ଏ ଦୃଶ୍ୟ ଦେଖି ଯୁବ ଫୁଲକୋବି ବୀର ସୁମନ୍ତ ମହାନ୍ତି ବିପଦକୁ ଖାତିର ନକରି ଡେଇଁ ପଡ଼ିଲେ ସେ ଦୁର୍ବୃତ୍ତମାନଙ୍କ ଉପରକୁ। ହାତରେ ଥିଲା ଦଳର ଲୋଗୋ ଥିବା ବିଶାଳ ପତାକାଟିଏ। ସେ ଚିତ୍କାର କରି ସାବଧାନ କରେଇ ଦେଲେ ଗୁଣ୍ଡାମାନଙ୍କୁ। ତା'ପରେ ଜଣେ ଦୁଇଜଣ ଗୁଣ୍ଡାକୁ ତଳେ ପକାଇ ଦେଲେ। କିନ୍ତୁ ସେମାନେ ଚାରିଜଣ ଥିଲେ।

ସେମାନଙ୍କ ହାତରେ ଧାରୁଆ ଅସ୍ତ୍ର ଥିଲା। ସୁମନ୍ତକୁ ଲୁହା ଛଡ଼ରେ ଆକ୍ରମଣ କରି ଧରାଶାୟୀ କରିଦେଲେ। ଅକସ୍ମାତ ସେତିକିବେଳେ ଫୁଲକୋବି ପାର୍ଟିର ମୁଖିଆ ବୁଲୁଭାଇ ଆସି ପହଞ୍ଚିଗଲେ। ସାଙ୍ଗରେ ଥିଲେ ତାଙ୍କର ନିରାପତ୍ତା ରକ୍ଷୀମାନେ। ଦୁର୍ବୃତ୍ତମାନଙ୍କ ସହ ଲଢ଼େଇ ହେଲା ଏବଂ ସେମାନେ ପୃଷ୍ଠଭଙ୍ଗ ଦେଲେ। ସେମାନେ ସମସ୍ତେ ଶାସକ ବନ୍ଧାକୋବି ଦଳର। ବୁଲୁଭାଇ ଦଳ ପକ୍ଷରୁ ଦୋକାନ ବଜାର ବନ୍ଦ କରିବା ପାଇଁ ଡାକରା ଦେଇଛି।

(ମଞ୍ଚ ଅନ୍ଧାର ହେଲା)

## ଦୃଶ୍ୟ-ଏକାଦଶ

(ମଞ୍ଚ ଅନ୍ଧାର ହେଲା। ଆଲୁଅ ଆସି ପଡ଼ିଲା ସୁକୁମାରୀ ଓ ବିୟୁଟିଙ୍କ ଉପରେ। ବିୟୁଟି ଖବରକାଗଜ ପଢ଼ି ଶୁଣାଉଚି ସୁକୁମାରୀଙ୍କୁ)

ବିୟୁଟି: ବାହାଡ଼ାଗୁଡ଼ା ଗ୍ରାମର ଫୁଲକୋବି କର୍ମୀ ସୁମନ୍ତ ମହାନ୍ତି ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରି ନିଜ ଜୀବନକୁ ବିପନ୍ନ କରିଛନ୍ତି। ଯେଉଁ ଦୁର୍ବୃତ୍ତମାନେ ଅସହାୟା ଯୁବତୀ ଉପରେ ଗଣ ବଳାତ୍କାର କରିଛନ୍ତି ସେମାନେ ସମସ୍ତେ ଶାସକ ବନ୍ଧାକୋବି ଦଳର!

ସୁକୁମାରୀ: ରାଇସ୍ ମିଲ୍‌ରେ ଠକିରି କରିବାକୁ ଆସିଥିଲା- ସିଏ କେତେବେଳେ ଫୁଲକୋବି ପାର୍ଟିରେ ମିଶିଲା?

ବିୟୁଟି: କେଜାଣି! ଖବରକାଗଜରେ କଣ ଲେଖା ହେଇଚି ଶୁଣ, (ପଢ଼ିଲା) ସୁମନ୍ତ ମହାନ୍ତି ଫୁଲକୋବି ପାର୍ଟିର ଜଣେ ସାଧାରଣ କର୍ମୀ ହୋଇଥିଲେ ସୁଦ୍ଧା ଜୀବନକୁ ପାଣି ଛଡ଼େଇ ଅନ୍ୟାୟ ବିରୁଦ୍ଧରେ ଲଢ଼େଇ କରିବା ପାଇଁ ଅସାମାଜିକମାନଙ୍କ ଉପରକୁ ଲମ୍ଫ ପ୍ରଦାନ କଲେ।

ଅସାମାଜିକମାନଙ୍କ ପାଲଟା ଆକ୍ରମଣରେ ସୁମନ୍ତ ମହାନ୍ତି ରକ୍ତାକ୍ତ ହୋଇ ମୃତ୍ୟୁ ସାଙ୍ଗରେ ଲଢ଼େଇ କରୁଛନ୍ତି ଦୁର୍ଗା ନର୍ସିଂହୋମ୍‌ରେ। ଫୁଲକୋବି ନେତା ଘଟଣାର ନିରପେକ୍ଷ ତଦନ୍ତ ଦାବି କରି ଦୋଷୀମାନଙ୍କୁ ଉପଯୁକ୍ତ ଶାସ୍ତି ଦିଆଯିବା ଉଚିତ ବୋଲି ଦାବି କରିଛନ୍ତି।

(ପ୍ରବେଶ କଲେ ପୀତାମ୍ବର କାନୁନ୍‌ଗୋ। ସୁକୁମାରୀ ତାଙ୍କୁ ଦେଖି କହିଲେ.. )

ସୁକୁମାରୀ: ଶୁଣୁଚ... ତମ ଭଣଜା ବବ୍‌ଲୁର କାଣ୍ଡ? ଖବରକାଗଜରେ ବାହାରିଚି...।

ପୀତାମ୍ବର: ଯାଇଥିଲି। ଦୁର୍ଗା ନର୍ସିଂହୋମ୍‌ରେ ଅଛି।

ସୁକୁମାରୀ: କେତେ ଟଙ୍କା ଖର୍ଚ୍ଚ ହବ? କୋଡ଼ିଏ ତିରିଶି ହଜାରରୁ କମ୍ ନୁହେଁ।

ପୀତାମ୍ବର: ତମର ବ୍ୟସ୍ତ ହବା ଦରକାର ନାଇଁ। ଫୁଲ୍‌କୋବି ପାର୍ଟି ସବୁ ପଇସା ଖର୍ଚ୍ଚ କରୁଚି। ତମର ଯଦି ଇଚ୍ଛା, ଯାଇ ଦେଖିକି ଆସିପାର।

ସୁକୁମାରୀ: ତମେ ଯାଇ ତ ଭଣଜା ସୁଆଗ ଦେଖେଇ ଆସିଲ ମୁଁ ଯାଇ ଆଉ କ'ଣଟେ କରିବି? କିଳାମାନଙ୍କୁ ହୁଇସିଲ୍ ବଜେଇ ଡାକୁଚି ତମ ବବ୍‌ଲୁ!

ପୀତାମ୍ବର: କାଇଁକି ଏମିତି ବିରକ୍ତ ହଉଚ ତା' ଉପରେ? ପଲିଟିକ୍‌ସ୍‌ରେ ମିଶିଲେ ଦି'ପଇସା ମିଳିବ ବୋଲି ଯାଇଥିଲା। ପଇସା ମିଳିଲେ କ'ଣ ତମକୁ ଦବନି? (ମଞ୍ଚ ଅନ୍ଧକାର ହେଲା)

(ଆଲୋକ ଆସିଲାବେଳକୁ ନରି ମଉସା ଦୋକାନ ଭାଙ୍ଗି ଦିଆ ହେଇଚି। ସେ ଖୁବ୍ ଜୋର୍‌ରେ ପାଟି କରୁଛନ୍ତି ଓ ପାଖରେ ଠିଆ ହେଇଚି ଅରକ୍ଷିତ ଡାକୁଆ। ହାତରେ ଖବରକାଗଜ)

ନରି ମଉସା: ନାଇଁ, ମୁଁ କା'ର କ'ଣ କଲି ଯେ ମୋ' ଦୋକାନ ଭାଙ୍ଗିଦେଲେ?

ଅରକ୍ଷିତ: ସେମାନେ ବନ୍ଦ ପାଳନ କରୁଛନ୍ତି। ତମେ ଦୋକାନ ଖୋଲିଲ କାଇଁକି?

ନରି ମଉସା: କି ବନ୍ଦ ସାର୍? ସେଗୁଡ଼ା ରାଜଧାନୀରେ ହବ ନା- ଆମ ଗାଁରେ? ବନ୍ଦ ଗୋଟାଏ କ'ଣ?

ଅରକ୍ଷିତ: ଏଇଟା ସେ ଫୁଲକୋବି ଦଳର ବିଶୃଙ୍ଖଳାରେ ନରି। ଆମେ କ'ଣ କରିବୁ?

ନରି ମଉସା: ଯେତେହେଲେ ବି ଆପଣ ଡାକୁଆ ସାର୍... ଆପଣ ହଉଚନ୍ତି ଆମର ସରକାର! ଆପଣ ଥାଉ ଥାଉ ମୋ' ଦୋକାନଟା ଛିନ୍‌ଛତର କରି ଭାଙ୍ଗିଦେଲେ?

ଅରକ୍ଷିତ: ମୁଁ କ'ଣ କରିଥାନ୍ତି? ସେମାନଙ୍କ ହାତରେ ମାରଣାସ୍ତ୍ର ଥିଲା। ଅଗତ୍ୟା ମୁଁ ଆସିଲି।

ନରି ମଉସା: ଆପଣ ଆସିଥିଲେ- ଆଉ ଆପଣଙ୍କ ସାମ୍ନାରେ ମୋର ଦୋକାନ ଭଙ୍ଗାହେଲା?

ଅରକ୍ଷିତ: ଜାର୍‌କିନ୍‌ରେ ପେଟ୍ରୋଲ୍ ଧରିଥିଲେ। ନିଆଁ ଲଗେଇ ଦେଇଥାନ୍ତେ। ବୁଝେଇ ସୁଝେଇ ପଠେଇଦେଲି।

ନରି ମଉସା: ହେଲେ ସାର୍... ଏବେ ମୁଁ କରିବି କ'ଣ? ମୋ' ପିଲାଛୁଆ ଖାଇବେ କ'ଣ?

ଅରକ୍ଷିତ: ଥାନାରେ ଖବର ଦିଅ। ମୁଁ କ'ଣ କରିବି? ସେ ବିଶ୍ୱାମିତ୍ର ମହାନ୍ତି ପୁଅକୁ କିଏ ମାରିଲା- ଆମ ବନ୍ଧାକୋବି ଦଳକୁ ବଦନାମ୍ କରୁଛନ୍ତି, ମିଛଟାରେ ବଦନାମ୍!

ମଦନା: ବଦନାମ୍ ହେବେନି? ବିଚରା ସୁମନ୍ତଟାକୁ ଲୁହା ଛଡ଼ରେ ପିଟିଲେ। ଭାଗ୍ୟକୁ ବୁଲୁଭାଇ ପହଞ୍ଚିଗଲେ ନହେଲେ ମରିଯାଇଥାଆନ୍ତା ଟୋକାଟା!

ଅରକ୍ଷିତ: ହେଃ! କାଇଁକି ଫାଲ୍‌ତୁ କଥାଗୁଡ଼େ ବକୁଚୁ? ସେ ଟୋକାଟାର କିଛି ହେଇନି। ମୁଣ୍ଡରେ ମିଛ ପଟି ଲଗେଇ ସୋ' ବାଜି କରୁଛନ୍ତି!

ମଦନା: ସୋ' ବାଜି?

ଅରକ୍ଷିତ: ନୁହଁ ଆଉ କ'ଣ? ତାକୁ ଗୋଟେ ଟ୍ରଲି ଉପରେ ଠିଆ କରେଇ ଗାଁ ଗାଁ ସହର ସହର ବୁଲେଇବା କ'ଣ ଦରକାର? କହୁଛନ୍ତି ସରକାରୀ ଦଳର କାଣ୍ଡ।

ମଦନା: 'ଘଟଣା ରାଜ୍ୟପାଳଙ୍କ କାନକୁ ଗଲାଣି ଦାଦା। ସୁମନ୍ତର

| | |
|---|---|
| | ଅବସ୍ଥା ଦେଖି ରାଜ୍ୟପାଳ ଗଭୀର ଉଦ୍‌ବେଗ ପ୍ରକାଶ କରିଛନ୍ତି। |
| ଅରକ୍ଷିତ: | ଉଦ୍‌ବେଗ ପ୍ରକାଶ କରିବାକୁ କିଏ କହିଲା? ରାଜ୍ୟପାଳ ଗୋଟେ ନିର୍ଦ୍ଦିଷ୍ଟ ଦଳର ଚମ୍‌ଚାଗିରି କରୁଛନ୍ତି। ତାଙ୍କର ମନ୍ତବ୍ୟ ହତଶାଜନକ। ସ୍ୱାସ୍ଥ୍ୟମନ୍ତ୍ରୀ କହୁଛନ୍ତି ରାଜ୍ୟପାଳଙ୍କ ମୁଣ୍ଡରେ ୪ଟା ସ୍କ୍ରୁ ଢିଲା ଅଛି, ତୁରନ୍ତ ଚିକିତ୍ସା ଆବଶ୍ୟକ। |
| ମଦନା: | ଆପଣ ସୁମନ୍ତ ମହାନ୍ତିକୁ ଦେଖିବାକୁ ଯାଇଥିଲେ? |
| ଅରକ୍ଷିତ: | କାହିଁକି ଯିବି? କୋଉ ଗାଈର ଗୋବର ସିଏ? |
| ନରି: | ସାର୍, କିଏ ଗୋଟେ କହୁଥିଲା ଆସନ୍ତା ନିର୍ବାଚନରେ ସୁମନ୍ତକୁ ଠିଆ କରେଇବେ। ଫୁଲକୋବି ପାର୍ଟିର କାଣ୍ଡିଡେଟ୍ ହବ। |
| ଅରକ୍ଷିତ: | ମୋ' ସାଙ୍ଗରେ ଲଢ଼େଇ କରିବ? ଚାରି ଚାରି ଥର ମୁଁ ଏଇ ବାହାଡ଼ାଗୁଡ଼ା ନିର୍ବାଚନ ମଣ୍ଡଳୀରୁ ଜିତିକି ଆସିଚି। ପ୍ରଥମେ ନୀଳାଚଳ ପାର୍ଟିରେ ଥିଲି- ଏବେ ବନ୍ଧାକୋବି ପାର୍ଟି। ଫୁଲକୋବି ଭୋଟ ପାଇବେ? |
| | (ପୃଷ୍ଠପଟରୁ ସ୍ଲୋଗାନ ଶୁଭିଲା: (୧) ବୁଲୁଭାଇ- ଜିନ୍ଦାବାଦ୍! ଜିନ୍ଦାବାଦ୍!, (୨) ଆମର ନେତା- ବୁଲୁଭାଇ, (୩) ଭାଇ ଭଉଣୀଙ୍କ ନେତା- ବୁଲୁଭାଇ, (୪) ମଉସା ମାଉସୀଙ୍କ ନେତା- ବୁଲୁଭାଇ, (୫) ବାଁକୁ ଦେଖିଲେ ବୁଲୁଭାଇ, (୬) ଡାହାଣକୁ ଗଲେ ବୁଲୁଭାଇ, (୭) ଉପରେ ଦେଖିଲେ ବୁଲୁଭାଇ, ତଳେ ଦେଖିଲେ ବୁଲୁଭାଇ!! ଏଇ ସ୍ଲୋଗାନ ଭିତରେ ମଞ୍ଚ ଅନ୍ଧାର ହେଲା।) |

# ଦ୍ୱାଦଶ ଦୃଶ୍ୟ

(ଆଲୁଅ ଆସିଲା ନର୍ସିଂହୋମ୍‌ରେ ସୁମନ୍ତର କୋଠରୀରେ। ବୁଲୁଭାଇ ସୁମନ୍ତର ହ୍ୱିଲ୍-ଚେୟାର ଠେଲି ଠେଲି ଆଣିଲେ ମଞ୍ଚର ମଧ୍ୟଭାଗ ପର୍ଯ୍ୟନ୍ତ। ସାଙ୍ଗରେ ସାମ୍ବାଦିକ-୨। ସେ ପଚାରିଲେ...)

ସାମ୍ବାଦିକ-୨ : ଆଚ୍ଛା ସୁମନ୍ତ ବାବୁ! ଆପଣ ସେଦିନ ପତାକା ଧରି ସ୍ଲୋଗାନ ଦେଇ ଦେଇ ଯାଉଥିଲେ ବୋଲି କହିଲେ। ତା'ଭିତରେ ବନ୍ଧାକୋବି ପାର୍ଟି ବିଷୟରେ କିଛି ଖରାପ ମନ୍ତବ୍ୟ ଦେଇଥିଲେ ?

ସୁମନ୍ତ: ମିଛକଥା, ବନ୍ଧାକୋବି ପାର୍ଟିର ନାଁ ମଧ୍ୟ ନେଇନି।

ସାମ୍ବାଦିକ-୨ : ଶାସକ ଦଳର ମୁଖପାତ୍ର କହୁଛନ୍ତି।

ସୁମନ୍ତ: କ'ଣ କହୁଛନ୍ତି ?

ସାମ୍ବାଦିକ-୨ : ବନ୍ଧାକୋବି ଦଳ ସମ୍ପର୍କରେ ଆପଣ ଅଭଦ୍ର ମନ୍ତବ୍ୟ ଦେଇଛନ୍ତି।

ସୁମନ୍ତ: ମିଛ। ଅସଲ କଥା, ରାଜନୈତିକ ଦୃଷ୍ଟିରୁ ସେମାନେ ଦେବାଳିଆ ହେଇଗଲେଣି। ପାଦତଳୁ ମାଟି ଖସିଗଲାଣି। ଲୋକେ ବନ୍ଧାକୋବି ଦଳର ଧପ୍ପାବାଜିକୁ ଧରିସାରିଲେଣି। ସେମାନେ ଜନସାଧାରଣଙ୍କର ଆସ୍ଥା ହରେଇ ବସିଲେଣି। ସେମାନେ ବୁଝି ସାରିଲେଣି- ଏ ଇଲେକ୍‌ସନ୍‌ରେ ପରାଜୟ ନିଶ୍ଚିତ। ସେଇଥିପାଇଁ ମୋ' ବିଷୟରେ ଯାଡୁସାଡୁ ଗପୁଛନ୍ତି।

| | | |
|---|---|---|
| ସାମ୍ବାଦିକ-୨ : | ତା'ମାନେ ଆପଣ ଖାଲି 'ବୁଲୁଭାଇ- ଜିନ୍ଦାବାଦ' କହୁଥିଲେ ? |
| ସୁମନ୍ତ: | ଆଜ୍ଞା। |
| ସାମ୍ବାଦିକ-୨ : | ତା'ପରେ ? ତା'ପରେ କ'ଣ ହେଲା ? |
| ସୁମନ୍ତ: | ମୁଁ ଯାଉଥିଲି। ହଠାତ୍ ଗୋଟେ ଝିଅର ଚିତ୍କାର ଶୁଭିଲା। (ପ୍ରଚ୍ଛଦପଟରୁ ଗୋଟେ ଝିଅର ଚିତ୍କାର 'କିଏ ଅଛ... ମତେ ବଞ୍ଚାଅ... ମା'! ବଞ୍ଚାଅ ମତେ...।' ) |
| ସାମ୍ବାଦିକ-୨ : | ତା'ପରେ ? |
| ସୁମନ୍ତ: | ମୁଁ ଦୌଡ଼ିଗଲି ତା' ପାଖକୁ। ଦେଖିଲି ସେଇ ମର୍ମନ୍ତୁଦ ଦୃଶ୍ୟ। ତା'ପରେ ମୋର ବୁଦ୍ଧି ବୃତ୍ତି ନଷ୍ଟ ହେଇଗଲା। ମୁଁ ସେମାନଙ୍କ ଉପରକୁ ଝାମ୍ପି ପଡ଼ିଲି। |
| ସାମ୍ବାଦିକ-୨ : | ଝିଅଟି ଦେଖିବାକୁ କେମିତି ? ସୁନ୍ଦରୀ ? |
| ସୁମନ୍ତ: | ସେଇଟା କ'ଣ ଦେଖିବା ବେଳ ? ମୋ' ମୁଣ୍ଡରେ ଖାଲି ଗୋଟିଏ ଚିନ୍ତା, ଏ ନରପିଶାଚମାନଙ୍କ କବଳରୁ ଝିଅଟିକୁ କିମିତି ରକ୍ଷା କରିବି। |
| ସାମ୍ବାଦିକ-୨ : | ତା' ଠିକ୍! ପ୍ରଥମେ ଯେତେବେଳେ ଝିଅଟାକୁ ଦେଖିଲେ- ସିଏ କୋଉ ଅବସ୍ଥାରେ ଥିଲା ? |
| ସୁମନ୍ତ: | ସଇତାନ୍‌ମାନଙ୍କ ପାଖରୁ ନିଜକୁ ବଞ୍ଚେଇବା ପାଇଁ ଚେଷ୍ଟା କରୁଥିଲା। |
| ସାମ୍ବାଦିକ-୨ : | ନାଇଁ, ନାଇଁ! ଝିଅଟାର ପୋଷାକପତ୍ର ଠିକ୍ ଥିଲା ? |
| ସୁମନ୍ତ: | ଶାଢ଼ି ଖସି ଯାଇଥିଲା। ସେମାନେ ତାର ବ୍ଲାଉଜ ଛିଣ୍ଡାଇ ଦେଇଥିଲେ। |
| ସାମ୍ବାଦିକ-୨ : | ସାୟାଟା ଥିଲା ନା ଖୋଲି ଦେଇଥିଲେ ? |
| ସୁମନ୍ତ: | ନା' ସାୟା ନଥିଲା। ଭିତରେ ଗୋଟିଏ ଅଣ୍ଡରୱେର୍ ପିନ୍ଧିଥିଲା ଝିଅଟା। |
| ସାମ୍ବାଦିକ-୨ : | କୋଉ ରଙ୍ଗର ଅଣ୍ଡରୱେର୍ ? |
| ସୁମନ୍ତ: | କି ଆଶ୍ଚର୍ଯ୍ୟ କଥା! ଏମିତି ଗୋଟେ ସଙ୍କଟରେ... ତା' ଛଡ଼ା ଅନ୍ଧାର ହେଇଯାଇଥିଲା- ତା' ଚଡ଼ିର ରଙ୍ଗଟା ଦିଶିବ କେମିତି ? |

ସାମ୍ବାଦିକ-୨ : ତଥାପି... ଲୁହାଛଡ଼ରେ ଆକ୍ରମଣ କରି ଆପଣଙ୍କର ଏ ଦୁର୍ଦ୍ଦଶା କଲେ। କିଏ ସେମାନେ? ଆପଣଙ୍କର ଜଣାଶୁଣା ନା ଶତ୍ରୁ...? କିଏ ସେମାନେ...?

ସୁମନ୍ତ: କେଜାଣି... କିନ୍ତୁ କଥାବାର୍ତ୍ତାରୁ ଜଣା ପଡୁଥିଲା ବନ୍ଧାକୋବି ଦଳର।

ସାମ୍ବାଦିକ-୨ : ଆପଣଙ୍କୁ ଫୁଲକୋବି ଦଳର ଜଣେ ନିସ୍ୱାର୍ଥପର କର୍ମୀ ରୂପେ ବଛା ଯାଇଚି। ନିର୍ବାଚନରେ ଲଢ଼େଇ କରିବା ପାଇଁ ଟିକଟ ମିଳିଛି। ଆପଣଙ୍କୁ ଦଳର ଏକ ଉଦାହରଣ ବୋଲି କାଲି ଏକ ବିରାଟ ଶୋଭାଯାତ୍ରା ବାହାରୁଚି। ଗୋଟେ ଛୋଟ ଟ୍ରକ୍ ଫୁଲକୋବିରେ ସଜା ହେଇଚି।

ବୁଲୁଭାଇ: ଦେଖନ୍ତୁ ମୁଁ ନିଜେ ଏଇଠି ଉପସ୍ଥିତ। ପାର୍ଟିର ମୁଖ୍ୟ ହିସାବରେ ମତେ ପଚାରୁ ନାହାନ୍ତି? ତାଙ୍କୁ କାହିଁକି ଅଯଥା ହଇରାଣ କରୁଛନ୍ତି?

ସାମ୍ବାଦିକ-୨ : କିନ୍ତୁ ଆପଣ କହିଲେ ସୁମନ୍ତ ବାବୁ ଫୁଲକୋବି ଦଳର ମୁଖ୍ୟମନ୍ତ୍ରୀ କାଣ୍ଡିଡେଟ୍! ଏକଥା କ'ଣ ସତ?

ବୁଲୁଭାଇ: ଖାଲି ମୁଖ୍ୟମନ୍ତ୍ରୀ କାଣ୍ଡିଡ଼େଟ୍ ନୁହେଁ। ଦେଶର କନିଷ୍ଠତମ ମୁଖ୍ୟମନ୍ତ୍ରୀ ହେବାକୁ ଯାଉଛନ୍ତି ସିଏ। କିନ୍ତୁ ଗୋଟାଏ କଥା- ଆମ ପାଖରେ ବାଣ୍ଟିବା ପାଇଁ ଟଙ୍କା ନାହିଁ କି ପିଲେଇବା ପାଇଁ ମଦ ନାହିଁ। ଆପଣ ଏଥର ଯାଇପାରନ୍ତି। ସୁମନ୍ତ ବାବୁ କ୍ଳାନ୍ତ ହେଇ ପଡ଼ିଲେଣି- (ସାମ୍ବାଦିକ ଚାଲିଗଲେ)

(ପ୍ରଚ୍ଛଦପଟରୁ ସ୍ଲୋଗାନ ପରେ ସ୍ଲୋଗାନ ଶୁଭିଲା: )

(୧) ଫୁଲକୋବି ଦଳ! ଜିନ୍ଦାବାଦ: ଜିନ୍ଦାବାଦ-ଜିନ୍ଦାବାଦ

(୨) (ଏଇ) ବୁଲୁଭାଇ! ଜିନ୍ଦାବାଦ: ଜିନ୍ଦାବାଦ-ଜିନ୍ଦାବାଦ

(୩) (ଏଇ) ସୁମନ୍ତଭାଇ! ଜିନ୍ଦାବାଦ: ଜିନ୍ଦାବାଦ-ଜିନ୍ଦାବାଦ

(୪) (ଏଇ) ସୁମନ୍ତଭାଇ! ଯୁଗ୍ ଯୁଗ୍ ଜୀଓ: ଯୁଗ୍ ଯୁଗ୍ ଜୀଓ...

(୫) ତୁମର ଆମର ଫୁଲ୍‌କୋବି: ଆଳୁ ସାଙ୍ଗରେ ଫୁଲ୍‌କୋବି!

(୬) ପୋଟଳ ସାଙ୍ଗରେ ଫୁଲ୍‌କୋବି: ମାଛ ଝୋଳରେ ଫୁଲ୍‌କୋବି!

(୭) ସୁମନ୍ତ ହାତରେ ଫୁଲ୍‌କୋବି: ଫୁଲ୍‌କୋବି ଭାଇ ଫୁଲ୍‌କୋବି !

(୮) ସୁମନ୍ତ ହାତରେ ଫୁଲ୍‌କୋବି: ଫୁଲ୍‌କୋବି ଭାଇ ଫୁଲ୍‌କୋବି !

(ବୁଲୁଭାଇ ଉତ୍ସାହର ସହିତ ମଞ୍ଚ ଉପରେ ପଦଚାରଣା କଲେ ଏବଂ ହ୍ୱିଲ୍ ଚେୟାର ଉପରେ ବସିଥିବା ସୁମନ୍ତକୁ ପଚାରିଲେ)

ବୁଲୁଭାଇ: ଏଇ ଯୋଉ ସ୍ଲୋଗାନ୍ ଶୁଣୁଚୁ- ସେଥିରୁ କ'ଣ ବୁଝିଲୁ ?

ସୁମନ୍ତ: ବଢ଼ିଆ ହେଲା ।

ବୁଲୁଭାଇ: ବନ୍ଧାକୋବି ଭିତରେ ଭିତରେ ପଚିଗଲାଣି । ମାନେ ଲୋକେ କହିଲେଣି, ବନ୍ଧାକୋବି ଅଖାଦ୍ୟ !

ସୁମନ୍ତ: କିନ୍ତୁ ବୁଲୁଭାଇ... ମୁଁ ବାଇଶି ବର୍ଷର ଟୋକାଟେ... ମତେ ଭୋଟରେ ଠିଆ କରେଇଦେଲ । ମତେ କ'ଣ ଲୋକେ ଭୋଟ ଦେବେ ?

ବୁଲୁଭାଇ: ଭୋଟ କ'ଣ ଦେବେ... ? ମୁଣ୍ଡରେ କାନ୍ଧରେ ବସେଇ ସାହି ପରିକ୍ରମା କରିବେ ! ତୁ ଆମ ଫୁଲ୍‌କୋବି ପାର୍ଟିର ମଉଡ଼ମଣି ।

ସୁମନ୍ତ: ବନ୍ଧାକୋବି ଦଳ କୋଡ଼ିଏ ବର୍ଷ ହେଲା ପାୱାରରେ ଅଛି । ସେମାନେ ପାଣି ପରି ଟଙ୍କା ଖର୍ଚ୍ଚ କରିବେ ।

ବୁଲୁଭାଇ: କରନ୍ତୁ । ଟଙ୍କା ନେବେ ତାଙ୍କଠୁ- କିନ୍ତୁ ଭୋଟ ଦେବେ ତତେ । ଦେଖ୍ କ'ଣ ହଉଚି । ମୁଁ ଯାଇ ଏକଥା ତମ ଘରେ କହିଦେଇ ଆସୁଚି ।

(ଚାଲିଗଲା ବୁଲୁଭାଇ । ପ୍ରଚ୍ଛଦପଟରୁ ଶୁଭିଲା ସ୍ଲୋଗାନ: )

(୧) ସୁମନ୍ତଭାଇ: ଜିନ୍ଦାବାଦ-ଜିନ୍ଦାବାଦ

(୨) ତମର ଆମର ସୁମନ୍ତଭାଇ ! ଯୁଗ୍‌ଯୁଗ୍ ଜୀଓ ସୁମନ୍ତଭାଇ !

(୩) ସୁମନ୍ତ ହାତରେ ଫୁଲ୍‌କୋବି: ଫୋପାଡ଼ି ଦିଅରେ ବନ୍ଧାକୋବି !

(୪) ତମର ଆମର ଫୁଲ୍‌କୋବି: ଫୁଲ୍‌କୋବି ଭାଇ ଫୁଲ୍‌କୋବି !

(ସ୍ଲୋଗାନ ଭିତରେ ମଞ୍ଚ ଆଲୋକ ସ୍ତିମିତ ହୋଇ ଅନ୍ଧାର ହେଲା)

# ତ୍ରୟୋଦଶ ଦୃଶ୍ୟ

(ସ୍ଲୋଗାନ୍ ଶବ୍ଦ କ୍ଷୀଣ ହେବା ସଙ୍ଗେ ସଙ୍ଗେ ମଞ୍ଚରେ ଆଲୁଅ ଆସିଲା ଏବଂ କଲିଂ ବେଲ୍ କ୍ରିଂ କ୍ରିଂ ହେଇ ବାଜିଲା। ଇଲିସି ତାଙ୍କର ଷ୍ଟୁଲ୍, ଫୋଲ୍ଡ଼ିଂ ଟେବୁଲ ଓ ସିଲେଇ ମେସିନ୍ ଆଣି ମଞ୍ଚ ଉପରେ ରଖୁ ରଖୁ ବିରକ୍ତ ହେଇ କହିଲେ।)

ଇଲିସି: ଓହୋ... କିଏ କିହୋ ଏମିତି? କଲିଂ ବେଲ୍‌ଟାକୁ କ'ଣ ମାରି ଗଲିଚ? ଜାଣିଚ କି ନାଇଁ ଘରେ ମୁଁ ଏକଲା ମଣିଷ? (ଯାଇ ଦୁଆର ଖୋଲିଲେ ଓ ପ୍ରବେଶ କଲେ ବୁଲୁଭାଇ)

ବୁଲୁଭାଇ: ମାଉସୀ ନମସ୍କାର!

ଇଲିସି: ନମସ୍କାର... କିଏ?

ବୁଲୁଭାଇ: ମୁଁ ବୁଲୁ। ଆମର ଯୋଉ ଫୁଲ୍‌କୋବି ପାର୍ଟି ହେଇଚି ସେଇଟା ମୁଁ ତିଆରି କରିଚି।

ଇଲସି: କରିଚ ଯେ ବାବା! ମୋ' ପୁଅଟାକୁ ତା' ଭିତରେ ଫସେଇ କାଇଁକି ତା' ଜୀବନ ବରବାଦ କରୁଚ? କାଇଁ ମୋ' ବାବ୍‌ଲୁ? ବୋମା ପକେଇ ତାକୁ ମାରିଦେବାକୁ ବସିଥିଲା

ସରକାର...।

ବୁଲୁ: ମୁଁ ହିଁ ତାକୁ ନେଇ ହସ୍‌ପିଟାଲ୍‌ରେ ଭର୍ତ୍ତି କରିଚି ମାଉସୀ। ଆପଣଙ୍କ ପୁଅ ପୁରା ଭଲ ହେଇଗଲାଣି।

ଇଲିସି: କାଇଁ? କାଇଁ ମୋ' ପୁଅ?

ବୁଲୁ: (ହସିଲା) ମାଉସୀ! ତାକୁ ଆମେ ଇଲେକ୍‌ସନ୍‌ରେ ଠିଆ କରେଇଚୁ!

ଇଲିସି: ଏ ମା'! ଛୁଆଟା, ବାଇଶି ବର୍ଷର। ସେଇଟା କ'ଣ ନେତା ହବ?

ବୁଲୁ: ଆଜିକାଲି ଯୁବକମାନଙ୍କୁ ହିଁ ଶାସନ ଭାର ଦିଆଯାଉଚି ମାଉସୀ- ଆଉ ବୁଢ଼ାଙ୍କ ଜମାନା ନାହିଁ। ବୁଢ଼ାମାନେ ଖାଲି ବାଟ ଦେଖେଇବେ। ବାସ୍! ସେତିକି।

ଇଲିସି: ଏଇ ଯୋଉ ପଟୁଆର ସ୍ଲୋଗାନ ଶୁଭୁଥିଲା- ସେଇଟା କ'ଣ?

ବୁଲୁ: ବାବ୍‌ଲୁ ପାଇଁ ପ୍ରଚାର ଚାଲିଚି।

ଇଲିସି: ବାବ୍‌ଲୁ ଯଦି ଚାକିରି ଛାଡ଼ି ରାସ୍ତାରେ ଶୋଭାଯାତ୍ରା କରିବ... ଘର ଚଳିବ କେମିତି...?

ବୁଲୁ: ବାବ୍‌ଲୁ ବ୍ୟସ୍ତ ହେଇ ଆପଣଙ୍କ କଥା କହୁଥିଲା ମାଉସୀ। ସେଥିପାଇଁ ଆସିଲି। (ବ୍ୟାଗ୍‌ରୁ ଦି'ବିଡ଼ା ନୋଟ୍ ବାହାର କରି) ଏଇ କୋଡ଼ିଏ ହଜାର ରଖିଥାନ୍ତୁ। ମୁଁ ପୁଣି ଆର ମାସରେ ଆସି ପଇସା ଦେବି!

ଇଲିସି: (ଟଙ୍କା ନେଉନେଉ ଭାବ ବିହ୍ୱଳ ହେଇଗଲେ ଇଲିସି। କାନ୍ଦକାନ୍ଦ ହେଇ କହିଲେ) ଘର ସଉଦା କିଣିବା ପାଇଁ ପଇସା ନଥିଲା ବାପା! ଗାଁରେ ଦି'ଘରେ ରୋଷେଇ କରୁଚି; ସାୟା, ବ୍ଲାଉଜ ସିଲେଇ କରୁଚି। ସ୍ୱାମୀ ଛାଡ଼ି ଦେଇଚି, ଏ ପୁଅଟା ହିଁ ଏକମାତ୍ର ଭରସା। (ଆଖି ପୋଛିଲେ)

ବୁଲୁ: ମତେ ଆଉ ଗୋଟେ ପୁଅ ବୋଲି ଭାବିନିଅ ମାଉସୀ! ପର ଘରେ ବାସନ ମାଜି ରୋଷେଇ କରିବା ଦରକାର ନାଇଁ। ଠାକୁରଙ୍କୁ ଡାକନ୍ତୁ, ବାବ୍‌ଲୁ କେମିତି ଜିତିଯାଉ।

ଇଲିସି: ତାକୁ ଦେଖୁଥିବ ବାପା... ତମେ ହିଁ ତାର ଅଭିଭାବକ... ବାପ ନାଇଁ।

ବୁଲୁ: ଆପଣ ଜମା ବ୍ୟସ୍ତ ହେବେନି! ମୁଁ ଅଛି। ହେଲେ ମାଉସୀ ଆପଣ ଏ କଥା ଜମା କାହାରିକୁ କହିବେ ନାଇଁ। ହଁ... ଭୁଲି ଯାଉଥିଲି। ଖବରକାଗଜବାଲା ଆପଣଙ୍କ ପାଖକୁ ଆସିପାରନ୍ତି।

ଇଲିସି: ଏ ମା'! ଖବରକାଗଜବାଲା ମୋ ପାଖକୁ?

ବୁଲୁ: ଆସିବେ ମାଉସୀ। ପଚାରିବେ ଆପଣଙ୍କ ପୁଅ ବିଷୟରେ। ଆପଣ କ'ଣ କହିବେ?

ଇଲିସି: (ହସିଲେ) ବବ୍‌ଲୁ ବିଷୟରେ?

ବୁଲୁ: ପଚାରିଲେ କହିବେ ବାବ୍‌ଲୁ ନାରୀ ଜାତିର ସମ୍ଭ୍ରମ ରକ୍ଷା କରିବା ପାଇଁ ଯୁଦ୍ଧକୁ ଡେଇଁ ପଡୁଥିଲା ପିଲାଦିନେ। କହିବେ, ତା' ଭଳି ପୁଅର ମା' ହେଇ ଆପଣ ଧନ୍ୟ! ଆପଣ ଗର୍ବିତ। ଆପଣ କହିବେ ଦୁର୍ନୀତିରେ ପଚିସଢ଼ି ଯାଇଥିବା ବନ୍ଧାକୋବିକୁ ଛାଡ଼ି ସମସ୍ତେ ଫୁଲକୋବି ପାର୍ଟିରେ ଭୋଟ ଦିଅନ୍ତୁ। ଆପଣଙ୍କୁ ଆଉ ଗୋଟେ ଅନୁରୋଧ, ଆପଣଙ୍କ ଚିହ୍ନା ପରିଚୟ ଗାଁରେ ଯେତେ ମାଇପି ଅଛନ୍ତି ସମସ୍ତଙ୍କ ଘରକୁ ଯାଇ ବବ୍‌ଲୁ ନାଁରେ ପ୍ରଚାର କରିବେ। କରିବେଟି?

ଇଲିସି: ନିଶ୍ଚୟ କରିବି।

ବୁଲୁ: ମୁଁ ତା'ହେଲେ ଆସୁଚି ମାଉସୀ। ଶୋଭାଯାତ୍ରା ସାଙ୍ଗରେ ଯିବାକୁ ପଡ଼ିବ। ଏଇଟା ରଖିଥା'ନ୍ତୁ।

(ବିଡ଼ାଏ ନୋଟ୍ ଦେଇ ମୁଣ୍ଡିଆ ମାରି ଚାଲିଗଲା ବୁଲୁ। ଇଲିସି ଆଖିବୁଜି ଠାକୁରାଣୀଙ୍କୁ ଡାକିଲେ- ହେ ମା' ଖରାଖାଇ ଗ୍ରାମ ଦେବତୀ! ମୋ ପୁଅକୁ ଘଣ୍ଟ ଘୋଡ଼େଇ ରଖିଥା' ମା'! ବାପ ଛେଉଣ୍ଡ ପିଲାଟା ମୋର... ତାକୁ ଭୋଟରେ ଜିତେଇ ଦେ' ମା'! କୁକୁଡ଼ା ବଳି ଦେବି।)

(ସାମ୍ବାଦିକ-୧ ଓ ସାମ୍ବାଦିକ-୨ ଲମ୍ବ ହେଇ ତାଙ୍କ ପାଦତଳେ ପଡ଼ିଗଲେ। ଚମକି ପଡ଼ିଲେ ଇଲିସି।)

ଇଲିସି: ବୁଢ଼ାଟିଏ ହେଇଥା' ବାପା! ତମର କୋଟି ପରମାୟୁ ହଉ। (ଉଠିଲା ସାମ୍ବାଦିକ) କିନ୍ତୁ ବାପା ତମେ କିଏ ତ ମୁଁ ଜାଣି ପାରିଲି ନାହିଁ!

ସାମ୍ବାଦିକ-୧ : ସାମାନ୍ୟ ସାମ୍ବାଦିକଟେ ମା’ !

ଇଲିସି: ତା’ମାନେ ବାବ୍‌ଲୁର ଯୋଉ ଫଟୋ ବାହାରୁଚି ଖବରକାଗଜରେ- ସେଇଟା ତମେ ବାହାର କରୁଚ ?

ସାମ୍ବାଦିକ-୧ : ଆପଣଙ୍କର ବି ଫଟୋ ବାହାରିବ। ଗୋଟାଏ ମିନିଟ୍‌ ! (ଇଲିସି ଦେବୀଙ୍କର ଫଟୋ ଉଠାଇଲା)

ଇଲିସି: ଇଆଡ଼େ କୁଆଡ଼େ ଆସିଲ ବାପା- ପୁଅ ତ ନର୍ସିଂହୋମ୍‌ରେ ଅଛି।

ସାମ୍ବାଦିକ-୧ : ଜାଣିଚି ମା’ ! କିନ୍ତୁ ଗୋଟାଏ କଥା, ଏଇ ଯେ ସୁମନ୍ତ ବାବୁ ଗୋଟିଏ ଅପରିଚିତା ଝିଅର ସଂଭ୍ରମ ରକ୍ଷା କରିବାକୁ ଯାଇ ନିଜକୁ ମୃତ୍ୟୁର ଘେର ଭିତରେ ଫୋପାଡ଼ି ଦେଲେ- ସେ ସମ୍ପର୍କରେ କ’ଣ କହିବେ ?

ଇଲିସି: ବାବ୍‌ଲୁ ଆମର ଭଲ କାମଟେ କଲା।

ସାମ୍ବାଦିକ-୧ : ଏମିତି ଗୋଟେ ପୁଅର ମା’ ହୋଇ ଆପଣ କ’ଣ ଗର୍ବ ଅନୁଭବ କରୁଛନ୍ତି ?

ଇଲିସି: ହଁ, ପୁଅ ପାଇଁ ମୁଁ ଗର୍ବିତ।

ସାମ୍ବାଦିକ-୧ : ଆପଣ ଜାଣିଛନ୍ତି ? ଆପଣଙ୍କର ପୁଅ ନିର୍ବାଚନରେ ଲଢୁଛନ୍ତି ଏଥର ?

ଇଲିସି: (ହସିଲେ) ତା’ ମୁଣ୍ଡରେ ଏମିତି ଅନେକ ପାଗଳାମୀ ଅଛି। ଇଲେକ୍‌ସନ୍ କଥା ମତେ କହିନି। ମୁଁ ଯାହା ଖବରକାଗଜରୁ ଜାଣୁଚି !

ସାମ୍ବାଦିକ-୧ : ନାଇଁ... ସୁମନ୍ତ ବାବୁଙ୍କ ସ୍ୱପ୍ନ ସମ୍ପର୍କରେ ଆପଣ କ’ଣ କହିବେ ?

ଇଲିସି: ତା’ର ସବୁ ସ୍ୱପ୍ନ ସାକାର ହଉ। ସବୁବେଳେ ସିଏ ଏମିତି ଅନ୍ୟାୟ ବିରୁଦ୍ଧରେ ଲଢୁଥାଉ। ଠାକୁରାଣୀଙ୍କୁ ଡାକି ମୁଁ ପ୍ରାର୍ଥନା କରୁଚି।

ସାମ୍ବାଦିକ-୧ : କିନ୍ତୁ ଅନ୍ୟାୟ ବିରୁଦ୍ଧରେ ଲଢ଼ିଲେ ଜୀବନ ପ୍ରତି ବିପଦ ଅଛି।

ଇଲିସି: ଅଛି। ମୋ’ ପୁଅ ଯେ ଦେଶ ପାଇଁ, ସମାଜ ପାଇଁ ଜୀବନ ଦେବ, ଏଇଟା ମୋର ଭାଗ୍ୟ।

ସାମ୍ବାଦିକ-୧ : ଯୋଉ ଝିଅଟା ପାଶବିକତାର ଶିକାର ହେଲା, ତା' ବିଷୟରେ କ'ଣ କହିବେ ?

ଇଲିସି: କହିବି, ଝିଅମାନେ ଯୋଉଠି ଥାଆନ୍ତୁ ନା କାହିଁକି- ଖୁବ୍ ସାବଧାନ ସହକାରେ ଚଳିବାକୁ ହେବ! ଯୁଗ ଖରାପ। (ହଠାତ୍ ଅନ୍ଧକାର ହେଲା ମଞ୍ଚ ୩୦ ସେକେଣ୍ଡ ପାଇଁ। ତା'ପରେ ହଠାତ୍ ଆଲୁଅ ଆସିଲାବେଳକୁ ଗୋଟେ ଖବରକାଗଜ ଧରି ଖୁବ୍ ଜୋର୍‌ରେ ହସୁଛନ୍ତି ବୁଲୁଭାଇ, ପାଖରେ ଠିଆ ହେଇଚି ସୁମନ୍ତ।)

# ଚତୁର୍ଦ୍ଦଶ ଦୃଶ୍ୟ

(ହଠାତ୍ ମଞ୍ଚ ଆଲୋକିତ ହେଲା। ବୁଲୁ ହାତରେ ଖବର କାଗଜ।)

ବୁଲୁଭାଇ: ହା.. ହା.. ହା.. ହା.. ହା.. ହା...! କ'ଣ ନ କହିଚନ୍ତି ମାଉସୀ? ବଢ଼ିଆ ଇଣ୍ଟରଭ୍ୟୁ!

ସୁମନ୍ତ: ବୋଉ ଯେ ମୋ' ସମ୍ପର୍କରେ ଏମିତି ଗୋଟେ ଇଣ୍ଟରଭ୍ୟୁ ଦବ ମୁଁ ଜମା ଭାବି ପାରୁନି।

ବୁଲୁଭାଇ: ତୁ' ଏଇଠି ହସ୍‌ପିଟାଲ୍‌ରେ ଥିଲା ସମୟରେ ମୁଁ ତମ ଘରକୁ ଯାଇ ମାଉସୀଙ୍କୁ କିଛି ପଇସା ଦେଇଥିଲି ଆଉ ଏ ପଲିଟିକ୍‌ସ୍ ପଛରେ ଥିବା କାହାଣୀ ଶୁଣେଇଥିଲି। ମାଉସୀ ଉଦ୍‌ବୁଦ୍ଧ ହେଇଯାଇଥିଲେ। ଏଗୁଡ଼ା ସବୁ ମାଉସୀଙ୍କୁ ମୁଁ କହିଚି।

ସୁମନ୍ତ: କିନ୍ତୁ ଏଇ ଯୋଉ ଝିଅଟାର ଇଜ୍ଜତ ରକ୍ଷା କରାଗଲା ଏଇଟା ଗୋଟେ ମନଗଢ଼ା କାହାଣୀ।

ବୁଲୁଭାଇ: ଏ ଦେଶରେ ଯାହା ସବୁ ଘଟୁଚି ପ୍ରଗତି ନାଁରେ, ସବୁ ଗୋଟାଏ ଗୋଟାଏ ମନଗଢ଼ା କାହାଣୀ। ଆମର ସ୍ୱାଧୀନତା

ଗୋଟେ କାହାଣୀ- ଆସେମ୍ବ୍ଲିରେ ଯାହା ଘଟୁଚି ସେଗୁଡ଼ା ମଧ୍ୟ ଗୋଟେ ଗୋଟେ କାହାଣୀ। ଏତିକି ଜାଣିନୁ? କିନ୍ତୁ ମନେ ରଖିବୁ ବାବ୍‌ଲୁ! ଏ କାହାଣୀ ସତ ହବ। ତୁ' ଦେଖିବୁ ଫୁଲ୍‌କୋବି କାହାଣୀରେ ମୁଗ୍ଧ ହେଇ ତତେ ସମସ୍ତେ ଭୋଟ ଦେବେ!

(ମଞ୍ଚ ଅନ୍ଧାର ହେଲା, ଶୁଭିଲା ପ୍ରଚ୍ଛଦପଟରୁ ସ୍ଲୋଗାନ-)

(୧) ସୁମନ୍ତଭାଇ: ଜିନ୍ଦାବାଦ-ଜିନ୍ଦାବାଦ!

(୨) ଫୁଲ୍‌କୋବି ଦଳ: ଜିନ୍ଦାବାଦ-ଜିନ୍ଦାବାଦ!

(୩) ବୁଲୁଭାଇ: ଜିନ୍ଦାବାଦ-ଜିନ୍ଦାବାଦ!

(୪) ସୁମନ୍ତଭାଇ: ଯୁଗ୍ ଯୁଗ୍ ଜୀଓ: ସୁମନ୍ତ ଭାଇ!

# ପଞ୍ଚଦଶ ଦୃଶ୍ୟ

(ମଞ୍ଚ ଅନ୍ଧାର ହେଇ ଆଲୁଅ ଆସିଲାବେଳକୁ ସୁକୁମାରୀ ଖୁବ୍ ବିରକ୍ତ ହେଇ ଝାଡୁଛନ୍ତି ନୀରବ ରହିଥିବା ପୀତାମ୍ବରଙ୍କ ଉପରେ)

ସୁକୁମାରୀ: ଦରକାର ନାହିଁ ଆମର ସେ ଭଣଜା ସୁଆଗ ! ରାଇସ୍ ମିଲ୍‌ରେ କାମ କରୁଥିଲା- ଖୁବ୍ ଭଲ ଥିଲା, ଦି' ହଜାର ଟଙ୍କା ଦରମାରୁ ଆମେ ହଜାର ଟଙ୍କା ପାଉଥିଲେ। ହଠାତ୍ କ'ଣ ହେଲା ତା'ର ? ଶାସକ ଦଳର ଗୁଣ୍ଡାମାନଙ୍କ ସାଙ୍ଗରେ ପଙ୍ଗା ନେବା କ'ଣ ଦରକାର ଥିଲା ? ଯେମିତି କର୍ମ, ସେମିତି ଫଳ।

ପୀତାମ୍ବର: ଦେଖ ସୁକୁମାରୀ, ନର୍ସିଂହୋମ୍‌ରେ ଯାହା ଖର୍ଚ୍ଚ ହେଲା ମତେ ସେଥିରୁ ପାହୁଲାଟିଏ ବି ଦେବାକୁ ପଡ଼ିନି। ସବୁ ଫୁଲ୍‌କୋବି ପାର୍ଟିର ପ୍ରେସିଡେଣ୍ଟ୍ ଦେଇଚି।

ସୁକୁମାରୀ: ବିଲ୍ କେତେ ଆସିଲା ?

ପୀତାମ୍ବର: ୫୩ ହଜାର। ସବୁ ବୁଲୁଭାଇ ଦେଲା।

ସୁକୁମାରୀ: ତମ ଭଣଜା ବୁଲୁଭାଇର କିଏ ?

ପୀତାମ୍ବର: ବୁଲୁଭାଇର ମାନେ ବୁଲୁଭାଇର...।

(ପ୍ରବେଶ କଲା ସୁମନ୍ତ। ସୁସ୍ଥ ହୋଇଯାଇଚି)

ସୁମନ୍ତ: ମାଇଁ ନମସ୍କାର। ମାମୁ, ମାଇଁଙ୍କୁ ସବୁକଥା କହିଚ ?

ପୀତାମ୍ବର: କହିଚି ଆଉ ମାଇଁର ପ୍ରଶ୍ନ ବାଣରେ ଘାଇଲା ମଧ୍ୟ ହେଇଚି।

ସୁମନ୍ତ: କ'ଣ ହେଇଚି ମାଇଁ ?

ସୁକୁମାରୀ: ସେ ବୁଲୁଭାଇଟା କିଏ ? ତା' କଥାରେ ପଡ଼ି ମୁଣ୍ଡ ହାତ ଫଟେଇ ବେଜାଏ ଟଙ୍କା ଖର୍ଚ୍ଚ କରି ଆସିଚୁ ଡାକ୍ତରଖାନାରେ। ଏଗୁଡ଼ାକ କି' ବୁଦ୍ଧି ?

ପୀତାମ୍ବର: ବୁଝାଉଥା' ମାଇଁଙ୍କୁ ତୋ'ର ! ମୁଁ ଆସୁଚି।

(ଚାଲିଗଲେ ପୀତାମ୍ବର)

ସୁମନ୍ତ: ଦେଖ ମାଇଁ... ଯାହା ଘଟିଲା ସେଇଟା ଗୋଟେ ଦୁର୍ଘଟଣା... ପାର୍ଟିବାଲା ସବୁ ଖର୍ଚ୍ଚ କଲେ।

ସୁକୁମାରୀ: ପାର୍ଟି ? ସେଇଟା ପୁଣି କ'ଣ ? କ'ଣ ମିଳିବ ସେ ପାର୍ଟିରୁ ଆମକୁ ? ମାମୁ ତୋର କୁହାପୁଛା କରି ରାଇସ୍ ମିଲ୍‌ରେ ଚାକିରିଟା କରେଇ ଦେଇଥିଲେ। ସେଇଟାକୁ ଛାଡ଼ିଦେଲୁ ? ନଣନ୍ଦଟା ମୋର ବିଚାରୀ କେମିତି ଚଳିବ ? (କାନ୍ଦିବା ଅଭିନୟ)

ସୁମନ୍ତ: ମୁଁ ଇଲେକ୍‌ସନ୍‌ରେ ଠିଆ ହେଇଚି ମାଇଁ ! ଏମ୍.ଏଲ୍.ଏ. ହେଇଗଲେ ଭଲ ଦରମା ମିଳିବ। ପଚାଶ ହଜାର ମାସକୁ।

ସୁକୁମାରୀ: ହୁଁଃ ! ଭଲ ଦରମା ! ତମ ବଂଶରେ କିଏ ଏମ୍.ଏଲ୍.ଏ. ହେଇଥିଲା ?

ସୁମନ୍ତ: ଛାଡ଼ ସେ କଥା, ମାଇଁ... ତମ ଘରେ ବିଉଟି ବୋଲି ଯୋଉ ଝିଅଟା ଥିଲା, ସେଇଟା କାଇଁ ?

ସୁକୁମାରୀ: କାଇଁକି ?

ସୁମନ୍ତ: ଦରକାର ଅଛି।

ସୁକୁମାରୀ: କ'ଣ ଦରକାର ଏମିତି ସେ ବାରବୁଲି ଝିଅ ପାଖରେ ?

ସୁମନ୍ତ: ତମକୁ କାଇଁକି କହିବି ?

ସୁକୁମାରୀ: କହିବାକୁ ହବ।

| | |
|---|---|
| ସୁମନ୍ତ: | ମୁଁ ବିଉଟିକୁ କିଣିବି। |
| ସୁକୁମାରୀ: | କାଇଁକି ? କିଣିବୁ କାଇଁକି ? |
| ସୁମନ୍ତ: | ଏତେ ପ୍ରଶ୍ନର ଉତ୍ତର ଦେଇ ପାରିବିନି। |
| ସୁକୁମାରୀ: | ଆଚ୍ଛା ଠିକ୍ ଅଛି। ହେଲେ ବିଉଟିକୁ କିଣିବା ପାଇଁ ମାଲ୍ ଅଛି ପକେଟରେ ? |
| ସୁମନ୍ତ: | ହଁ ଅଛି। |
| ସୁକୁମାରୀ: | ଦେଖା ! |
| ସୁମନ୍ତ: | (ବ୍ୟାଗ୍ରୁ ଚାରି ବଣ୍ଡଲ ବାହାର କରି ଦେଖେଇଲା) |
| ସୁକୁମାରୀ: | କେତେ ଟଙ୍କା ? |
| ସୁମନ୍ତ: | ପୁରା ଚାରିଲକ୍ଷ। |
| ସୁକୁମାରୀ: | ଚାରି ଲକ୍ଷ ଟଙ୍କା ଧରିକି ବୁଲୁଚୁ ବ୍ୟାଗ୍ରେ ? କୋଉଠୁ ଆଣିଲୁ ଏତେ ଟଙ୍କା ? ଏଗୁଡ଼ା ଜାଲି ନୋଟ୍। ଦେଖି- ଟଙ୍କାଗୁଡ଼ା ଜାଲି କି ନାଁ ! |
| ସୁମନ୍ତ: | ଆଗ ବିଉଟିକି ଦିଅ- ତା'ପରେ ଟଙ୍କା ଦେବି। |
| ସୁକୁମାରୀ: | ବିଉଟିକୁ କିଣିବାକୁ ଚାହୁଁଚୁ କାଇଁକି ! କ'ଣ କାରଣ ? (ବର୍ତ୍ତମାନ ଲାଜ ଲାଗିଲା ସୁମନ୍ତକୁ। ସେ ଥଙ୍ଗେଇ ଥଙ୍ଗେଇ କହିଲା... ) |
| ସୁମନ୍ତ: | ଅସଲ କଥା ମାଇଁ... ବିଉଟି ଚାହୁଁଥିଲା ମୁଁ ତାକୁ କିଣେ, ମୋ' ପାଖରେ ରହିଲେ ଭଲରେ ରହିବ। |
| ସୁକୁମାରୀ: | ଆଚ୍ଛା ! ତା'ମାନେ ତମେ ଦି'ଜଣ ପରସ୍ପରକୁ ଭଲ ପାଉଥିଲ ! ସେଇଥିପାଇଁ ତୁ' ସେଦିନ ଖୋକାକୁ ବାଡ଼େଇ ଥିଲୁ ! ଖୋକାର ଦୋଷ କ'ଣ ? ଯେତେବେଳେ ଦେଖ ଛାତିକୁ ମୁକୁଳା କରି ବୁଲୁଥିଲା ଟୋକି ! ପଖାଳ ଦି'ଟା ଖାଇବା ଝିଅର ଛାତି ଏତେ ବଡ଼ କେମିତି ହୁଏ ଭଗବାନ ଜାଣନ୍ତି। |
| ସୁମନ୍ତ: | ବିଉଟିକୁ ଆଣ। |
| ସୁକୁମାରୀ: | ବିଉଟି ନାଇଁ। |
| ସୁମନ୍ତ: | ନାଇଁ ମାନେ ? |
| ସୁକୁମାରୀ: | କା' ସାଙ୍ଗରେ ଗୋଟେ ଉଧୁଲିଆ ପଳେଇଗଲା। |

| | |
|---|---|
| ସୁମନ୍ତ: | ତମେ ବିକ୍ରି କରି ଦେଇଥିବ! |
| ସୁକୁମାରୀ: | ହଁ ଛାଡ଼ିଦେଲି, କ୍ଷତି ହେଲା। ଆଉ କିଛିଦିନ ରଖିଥିଲେ ପାଞ୍ଚ ଲକ୍ଷ ହୋଇଥାନ୍ତା। |
| ସୁମନ୍ତ: | କୋଉଠି ବିକିଲେ? କାହାକୁ ବିକିଲ? |
| ସୁକୁମାରୀ: | ତୋର କ'ଣ ଗଲା କାହାକୁ ବିକିଲେ? ତୁ କ'ଣ ତା' ପାଖକୁ ଯିବୁ? |
| ସୁମନ୍ତ: | ହଁ, ଯିବି! |
| ସୁକୁମାରୀ: | ପାଞ୍ଚ/ଛ' ଲକ୍ଷ ଦେଇ କିଣିବୁ ତାକୁ? |
| ସୁମନ୍ତ: | କାହାକୁ ବିକିଚ ତା'ର ଠିକଣାଟା ଦିଅ ଆଗେ! |
| ସୁକୁମାରୀ: | ଗୋବିନ୍ଦପୁରର ପ୍ରତାପ ଜେନା। ଯିବୁ ଗୋବିନ୍ଦପୁର? |
| ସୁମନ୍ତ: | ଯିବି! |
| ସୁକୁମାରୀ: | ଆରେ ବାପ୍‌ରେ! ପ୍ରେମ ନିଗିଡ଼ି ପଡ୍ରୁଚି ସେ ବାଜେ ଟୋକୀଟା ପାଇଁ- ଖୋକାର ଚରିତ୍ର ନଷ୍ଟ ହେଇଗଲା ତା' ଲାଗି, ଏବେ ଯିବୁ ତା' ପାଖକୁ? |
| ସୁମନ୍ତ: | ଯିବି ମାଇଁ ନିଶ୍ଚୟ ଯିବି। |
| ସୁକୁମାରୀ: | ଯା'! ମର୍ ସେ ଦି' ପଇସାର କାମବାଲୀ ପାଇଁ...। (ବିରକ୍ତ ହେଇ ଚାଲିଗଲେ ସୁକୁମାରୀ। ମଞ୍ଚର ଆଲୋକ ଘନୀଭୂତ ହେଲା ସୁମନ୍ତ ଉପରେ। ତା'ପରେ ମଞ୍ଚ ସମ୍ପୂର୍ଣ୍ଣ ଅନ୍ଧାର ହେଲା।) (ପୁନର୍ବାର ଆଲୋକ ଆସିଲାବେଳକୁ ସୁମନ୍ତ ଏକଲା ଠିଆ ହେଇଚି ମଞ୍ଚ ଉପରେ। ପ୍ରବେଶ କଲେ ଜଣେ ଦାଢ଼ିବାଲା ପ୍ରୌଢ଼। ପ୍ରଚୁର ମଦ୍ୟପାନ କରି ଟଳମଳ ହେଉଛନ୍ତି। ସୁମନ୍ତକୁ ଦେଖି ଅଟକି ଗଲେ। ପଚାରିଲେ...) |
| ପ୍ରୌଢ଼: | କିଏ ତମେ? କ'ଣ ଦରକାର? |
| ସୁମନ୍ତ: | ବିଉଟି କାଇଁ? |
| ପୌଢ଼: | ବିଉଟି? ବିଉଟି କିଏ? |
| ସୁମନ୍ତ: | ବିଉଟି ମହାନ୍ତି। |
| ପ୍ରୌଢ଼: | ତମେ କିଏ? |
| ସୁମନ୍ତ: | ସୁମନ୍ତ ମହାନ୍ତି। |

ପ୍ରୌଢ଼: ମୁଁ ତ ଚିହ୍ନିନି ତମକୁ।

ସୁମନ୍ତ: ମୁଁ ବି ଚିହ୍ନିନି ତମକୁ। କିନ୍ତୁ ଶୁଣିଚି ବିଉଟି ଏଇଠି ଅଛି। ମୁଁ ବିଉଟିକୁ କିଣିବାକୁ ଆସିଚି।

ପ୍ରୌଢ଼: ଆରେ ସେ ବିଉଟି ମହାନ୍ତିଟା କିଏ? ସେଇଟା ପଚରୁଚି।

ସୁମନ୍ତ: ଆଶ୍ଚର୍ଯ୍ୟ! ଦି'ଦିନ ତଳେ ଝିଅଟାକୁ କିଣିଚ- ପଚରୁଚ କିଏ ବୋଲି?

ପ୍ରୌଢ଼: ଓହୋ ହୋ! ବୁଝିଲି। ସେ ଝିଅଟାର ନାଁଟା ବିଉଟି ତା'ହେଲେ?

ସୁମନ୍ତ: ବାଃ! କିଣିଲ ଝିଅଟାକୁ- ନାଁ ଜାଣିନା ଏ ଯାଏଁ?

ପ୍ରୌଢ଼: (ବିରକ୍ତି ସହ) ନାଁ ଟା କାଇଁକି ଜାଣିବି? ଦରକାର କ'ଣ? ଦରକାର ହେଲେ ପଚାରି ନେବି। ନହେଲେ ଆଉ ଗୋଟେ ନାଁ ଦେଇଦେବି। କିଣିଚି ଯେତେବେଳେ ମାଲ୍‌ଟା ମୋର, ମୁଁ ଯୋଉ ନାଁରେ ଡାକିବି ସିଏ ଶୁଣିବାକୁ ବାଧ୍ୟ।

ସୁମନ୍ତ: ଠିକ୍ ଅଛି। ମୁଁ ଏବେ ସେଇ ବିଉଟିକୁ କିଣିବାକୁ ଆସିଚି।

ପ୍ରୌଢ଼: ସେଇଟା କ'ଣ ସମ୍ଭବ? ମୁଁ ତାକୁ ଆଗ କିଣିଚି। ଯଦି କିଣିବାର ଥିଲା ଆଗରୁ ତମେ କିଣିଲନି?

ସୁମନ୍ତ: ପଇସା ନଥିଲା।

ପ୍ରୌଢ଼: ବହିନା ଦେଇ ଆସିଲନି? ତା'ହେଲେ ମୁଁ କିଣି ନଥାନ୍ତି।

ସୁମନ୍ତ: କିନ୍ତୁ ବିଉଟି ଚାହୁଁଚି ମୁଁ ତାକୁ କିଣେ।

ପ୍ରୌଢ଼: ତାର ପୁଣି ଗୋଟେ ଇଚ୍ଛା କ'ଣ? ସିଏ କିଏ?

ସୁମନ୍ତ: ତାକୁ ଡାକି ପଚରା ଯାଉ!

ପ୍ରୌଢ଼: କ'ଣ ଖେଳଘର ପାଇଲ? ଗୋରୁ ହାଟରେ ଗୋରୁ, ମେଣ୍ଢା ହାଟରେ କ'ଣ ମେଣ୍ଢାମାନଙ୍କ ମତ ପଚରାଯାଏ? ତମ ପାଖରେ ଯଦି ପଇସା ଅଛି, କିଣି ଘରକୁ ନେଇ ଯାହା କରିବା କଥା କର। ଛେଳିକୁ ପଚାରି ମଙ୍ଗଳବାର କରା ହେଇପାରିବ ନାଇଁ। ଯାଅ ଏଥର। ଫୁଟୋ।

ସୁମନ୍ତ: ଦେଖନ୍ତୁ... ମୋ' କଥାଟା ଟିକିଏ ବିଚାର କରନ୍ତୁ... ପ୍ଲିଜ୍!

ପ୍ରୌଢ଼: (ନୀରବ ରହିଲେ, ବୋଧହୁଏ କିଛି ଚିନ୍ତା କରୁଥିଲେ।)

ସୁମନ୍ତ: କ'ଣ କହୁଛନ୍ତି?

ପ୍ରୌଢ଼: କିଣିବ ?

ସୁମନ୍ତ: ହଁ କିଣିବି ! ଅଲବତ୍ କିଣିବି ।

ପ୍ରୌଢ଼: ପାଞ୍ଚ ଲକ୍ଷ ଦବାକୁ ପଡ଼ିବ ।

ସୁମନ୍ତ: ପାଞ୍ଚ ଲକ୍ଷ ? କାଇଁକି ?

ପ୍ରୌଢ଼: ମାଲ୍ ଭଲ ! ଭଲ ମାଲ୍ କିଣିବାକୁ ହେଲେ ଭଲ ପଇସା ଲାଗେ । ଏତିକି ଜାଣିନ ?

ସୁମନ୍ତ: କିନ୍ତୁ ମୋ' ପାଖରେ ତ ପାଞ୍ଚ ଲକ୍ଷ ନାଇଁ । ବହୁ କଷ୍ଟ କରି ୪ ଲକ୍ଷ ରଖିଚି ।

ପ୍ରୌଢ଼: ୪ ଲକ୍ଷ ଦେଇ ମୁଁ କିଣିଛି । ଝିଅଟା ଦେଖିବାକୁ ଯେମିତି ସୁନ୍ଦର ସେମିତି ବଢ଼ିଆ ସନ୍ତୁଳା ରୋଷେଇ କରେ । କିଣିନିଅ । ଶସ୍ତାରେ ଦଉଚି ମୁଁ ।

ସୁମନ୍ତ: ସେଥିପାଇଁ କହୁଚି- ଚାରି ଲକ୍ଷରେ ମତେ ଏବେ ବିଉଟିକୁ ଦେଇ ଦିଅ, କାଲି ଆଉ ଲକ୍ଷେ ଯୋଗାଡ଼ କରି ଦେଇଦେବି ।

ପ୍ରୌଢ଼: ତା'ହେଲେ ଆଜି କାଇଁକି ନବ ? କାଲି ନିଅ । ଏ ହାତରେ ପଇସା- ସେ ହାତରେ ବିଉଟି ।
(ବିଉଟି ଲୁଚିଲୁଚି ଆସି ଦେଖିଲା ସୁମନ୍ତକୁ)

ସୁମନ୍ତ: କାଲି ନ ଆସିପାରିଲେ ପଅରି ଦିନ ଆସିବି ।

ପ୍ରୌଢ଼: ଯଦି ପଅର ଦିନ କିଏ ତାକୁ ସାଢ଼େ ପାଞ୍ଚ ଦେଇ କିଣିବାକୁ ଚାହିଁବ, ତା'ହେଲେ ମୁଁ ଦେଇଦେବି... ।
(ହଠାତ୍ ଫୋନ୍ ଆସିଲା ଓ ପ୍ରୌଢ଼ ଜଣକ ବାହାରକୁ ଚାଲିଗଲେ । ସୁମନ୍ତ ଅସହାୟ ଭାବେ ଠିଆ ହେଲା ।)

ସୁମନ୍ତ: (ସ୍ୱଗତୋକ୍ତି) ହେ ମା' ଠାକୁରାଣୀ ! ମତେ ଟଙ୍କା ଦେଢ଼ ଲକ୍ଷ ଦେଇଦିଅ ମା' ! ମୁଁ ବିଉଟିକୁ କିଣିବି ।
(ବିଉଟି ପଛ ପଟୁ ଆସି ସୁମନ୍ତକୁ କୁଣ୍ଢେଇ ଧରିଲା ।) ଏଁ ! କିଏ ?

ବିଉଟି: ମୁଁ ବିୟୁଟି ଆସିଚି । ମତେ ଏଇଠୁ ନେଇଯାଅ ବବ୍ଲୁ ଭାଇ ! ଏଇଟା ଗୋଟେ ଅସୁର... ମତେ ଖାଲି ବାଡ଼ୋଉଚି । ନବ ନା ? ମତେ କିଣିକି ନେଇଯାଅ- ଏବେ ନେଇଯାଅ-
(କାନ୍ଦିଲା ବିଉଟି, ଆବହ ସଙ୍ଗୀତ ତାକୁ ସାହାଯ୍ୟ କଲା)

ସୁମନ୍ତ: ନେବି ବିଉଟି ! ନିଶ୍ଚୟ ନେବି । ଇଲେକ୍‌ସନ୍‌ଟା ସରିଯାଉ !
(ସୁମନ୍ତ ବିଉଟିକୁ ଜାବୁଡ଼ି ଧରିଲା । ମଞ୍ଚ ଅନ୍ଧକାର । ଅନ୍ଧାରରେ ଶୁଭିଲା ଗୋଟେ ଶୋଭାଯାତ୍ରାର ସ୍ଲୋଗାନ !
(୧) ବନ୍ଧାକୋବି- ଗାଦି ଛାଡ଼, ଗାଦି ଛାଡ଼
(୨) ସରକାର- ଜବାବ ଦିଅ- ଜବାବ ଦିଅ
(୩) ମୂଳା ରକ୍ଷୀ- ଅମର ରହେ- ଅମର ରହେ) ।

# ଷୋଡ଼ଶ ଦୃଶ୍ୟ

(ଅନ୍ଧାର ଭିତରେ ସ୍ଲୋଗାନ ଶୁଭୁଥିଲା ସାମ୍ବାଦିକ-୨ ସୋମନାଥର ବାହୁକୁ ଧରି ନେଇ ଆସିଲେ, ମଞ୍ଚର ମଧ୍ୟଭାଗ ପର୍ଯ୍ୟନ୍ତ। ସୋମନାଥ ବଡ଼ ପାଟିରେ ଚିତ୍କାର କରି କହୁଥିଲା...)

ସୋମନାଥ: ଆରେ, ଆରେ, ଆରେ ମତେ କାଇଁକି ଟାଣୁଚ ? ସେମାନେ ଚାଲିଗଲେ।

ସାମ୍ବାଦିକ-୨ : ସେମାନେ କିଏ ? ଶୋଭାଯାତ୍ରା କିଏ କରିଚି ?

ସୋମନାଥ: ଆଜ୍ଞା ଆମେ, ଏ ରାଜ୍ୟର ସବୁ ମୂଳା ଚାଷୀ ଆଜି ରାସ୍ତାକୁ ଓହ୍ଲାଇଛନ୍ତି।

ସାମ୍ବାଦିକ-୨ : କ'ଣ ପାଇଁ ? ଆଉ ତମେ କିଏ ?

ସୋମନାଥ: ମୁଁ ସୋମନାଥ ସ୍ୱାଇଁ ସାର୍! ମୂଳା ଚାଷୀ।

ସାମ୍ବାଦିକ-୨ : ଘର କୋଉଠି ?

ସୋମନାଥ: ବରଡ଼ାବିଲି।

ସାମ୍ବାଦିକ-୨ : ମୂଳା ଚାଷୀମାନେ କାଇଁକି ଶୋଭାଯାତ୍ରା ବାହାର କରିଚ ?

| | |
|---|---|
| ସୋମନାଥ: | ସାରେ ମୂଳା ଦର କମିଗଲା। ଚାଷୀମାନେ ଲସ୍‌ରେ ପଡ଼ି ଲୋନ୍ ଶୁଝିପାରୁନାହାନ୍ତି। ଆତ୍ମହତ୍ୟା କଲେଣି। |
| ସାମ୍ବାଦିକ-୨ : | ମୂଳାଦର କାଇଁକି କମିଲା? |
| ସୋମନାଥ: | ଏ ବର୍ଷ ପ୍ରଚୁର ଫଳିଚି ସାର୍, ଚାଷୀ ଶସ୍ତାରେ ବିକିବାକୁ ବାଧ୍ୟ। ଖର୍ଚ୍ଚ ଉଠୁନି। କ'ଣ କରିବୁ? ମୂଳାଗୁଡ଼ାକ କୋଉଠି ରଖିବୁ? |
| ସାମ୍ବାଦିକ-୨ : | ଆମ ଲୋକଙ୍କୁ ତ ମୂଳା ହିଁ ଦରକାର! ତା'ବୋଲି ଚଢ଼ା ଦାମ୍‌ରେ ବିକିବ ମୂଳାକୁ? |
| ସୋମନାଥ: | ପାଞ୍ଚ ଜଣ ମୂଳା ଚାଷୀ ଆତ୍ମହତ୍ୟା କଲେଣି ସାର୍! |
| | (ହଠାତ୍ ପ୍ରବେଶ କଲେ ସାମ୍ବାଦିକ-୧) |
| ସାମ୍ବାଦିକ-୧ : | ଆପଣ କିଏ ସାର୍? |
| ସୋମନାଥ: | ସୋମନାଥ ସ୍ୱାଇଁ। |
| ସାମ୍ବାଦିକ-୧ : | ଆପଣ ଜୀବିତ ନା ମୃତ? |
| ସୋମନାଥ: | ସେ କଥା ପାର୍ଟି କହିବ। |
| ସାମ୍ବାଦିକ-୧ : | ପାର୍ଟି କହୁଚି ସୋମନାଥ ସ୍ୱାଇଁ ମୃତ, କିନ୍ତୁ ଆମେ ଆପଣଙ୍କ ମୁହଁରୁ ହିଁ ଶୁଣିବାକୁ ଚାହୁଁଚୁ, କୁହନ୍ତୁ ଆପଣ ମୃତ ନା ଜୀବିତ? |
| ସୋମନାଥ: | ବଡ଼ ମୁସ୍‌କିଲ୍ ପ୍ରଶ୍ନ ସାର୍! କେତେଜଣ କହୁଛନ୍ତି ମୁଁ ମରିଯାଇଚି- ଆଉ କିଛି କହୁଚନ୍ତି, ମୁଁ ବଞ୍ଚିଚି। ସେଇଥିପାଇଁ ସାର୍ ମୁଁ ନିଜେ ଦ୍ୱିଧାଗ୍ରସ୍ତ। ସେଦିନ ଫୁଙ୍କୁଲିର ମା' କହିଲା- "ହଇଏ! କ'ଣ ମୁଁ ଶୁଣୁଚି ତମ ବିଷୟରେ! ଲୋକେ ଫୁସ୍ ଫାସ୍ ହଉଛନ୍ତି ତମେ କୁଆଡ଼େ ମରିଯାଇଚ"। |
| ସାମ୍ବାଦିକ-୨ : | ନାଇଁ ନାଇଁ! ପ୍ରକୃତରେ ଘଟଣାଟା କ'ଣ? |
| ସୋମନାଥ: | ପ୍ରକୃତରେ... ମୁଁ କେବେ ମଲି ମୋର ତ ମନେପଡୁନି ସାର୍! |
| ସାମ୍ବାଦିକ-୧ : | ତମେ ତ ମଦ ପିଇ ଶୋଭାଯାତ୍ରା କରୁଥିଲ। ନିଶାରେ ଯାଡୁ ସାଡୁ ଗପୁଛ। |
| ସୋମନାଥ: | ମୁଁ କ'ଣ ଗପୁଚି ସାର୍? ବନ୍ଧାକୋବି ପାର୍ଟି କହୁଚି ମୁଁ ବଞ୍ଚିଛି। ଫୁଲ୍‌କୋବି ପାର୍ଟି କହୁଛନ୍ତି ମୁଁ ମୃତ। ମୁଁ କୋଉ ପାର୍ଟି କଥା ଶୁଣିବି ଜାଣିପାରୁନି। ଦେଖନ୍ତୁ ସାର୍! ଆମ ମୂଳାମାନଙ୍କୁ ସେ ଡରୁଛନ୍ତି। ଲମ୍ବା ଯେମିତି, ମୋଟା ସେମିତି ସେଥିପାଇଁ |

| | |
|---|---|
| | ସମସ୍ତେ କୋବି ଖାଇବାରେ ବ୍ୟସ୍ତ। କିନ୍ତୁ ଆମ ମୂଳା ଯିଏ କିଣିବ- ମୁଁ ତା' କଥା ଶୁଣିବି। |
| | (ପ୍ରବେଶ କଲେ ବୁଲୁଭାଇ) |
| ବୁଲୁଭାଇ: | ଏ... ଏ... ଏ...! ଏଇଠି କ'ଣ କରୁଚ ତମେ! ଯାତ୍ରୁ ସାତ୍ରୁ ଗପିବ ତ ଜେଲ୍‌ରେ ପୁରେଇ ଦେବି। |
| ସୋମନାଥ: | ତା'ହେଲେ କ'ଣ କହିବି ସାର୍? |
| ବୁଲୁଭାଇ: | ତମେ ମୃତ। |
| ସୋମନାଥ: | ମୁଁ ମରିଗଲେ କ'ଣ ହେବ ସାର୍? |
| ବୁଲୁଭାଇ: | ତମ ଝିଅ ଫୁକୁଲି ଖୁବ୍ ଜୋର୍‌ରେ କାନ୍ଦିବ ଆଉ ମୁଁ ତା'ର ଭିଡ଼ିଓ, ଫଟୋ ଉଠେଇ ମୁଖ୍ୟମନ୍ତ୍ରୀଙ୍କୁ ଦେବି। ମୁଖ୍ୟମନ୍ତ୍ରୀ ତାଙ୍କ ପାଣ୍ଠିରୁ ପାଞ୍ଚ ଲକ୍ଷ ଟଙ୍କା ଦେଇ ପ୍ରାୟଶ୍ଚିତ କରିବେ। |
| ସୋମନାଥ: | ଫୁକୁଲି କାନ୍ଦିବ ବୋଲି ମତେ ମରିବାକୁ ହବ? ତା'ମାନେ ଜୀଇଁ ଥାଉ ଥାଉ ମତେ ପୋଡ଼ିଦେବେ ଆପଣମାନେ? |
| ବୁଲୁଭାଇ: | ନାଇଁ ନାଇଁ... ତମେ ମୃତଲୋକ ଭୂମିକାରେ ଅଭିନୟ କରିବ- ତମ ଡେଡ୍ ବଡ଼ିକୁ ଫୁଲରେ ମଣ୍ଡେଇ ସହର ପରିକ୍ରମା କରାଯିବ। ଆସ...! (ସାମ୍ବାଦିକମାନଙ୍କୁ) ସରି! ଏ ନାଟକଟା ନକଲେ ବନ୍ଧାକୋବି ପାର୍ଟି ଭାଙ୍ଗିବନି ସାର୍! ସୋମନାଥ ଏଇଠି ଶୋଭାଯାତ୍ରାରେ ମରନ୍ତୁ... ଆପଣମାନେ ଚାଲନ୍ତୁ... ତାଙ୍କ ଘରକୁ। |
| ସାମ୍ବାଦିକ-୨: | ତମ ଘର କୋଉଠି ସୋମନାଥ ବାବୁ? |
| ସୋମନାଥ: | କହିଲି ପରା ବରଡ଼ାବିଲି। |
| ବୁଲୁଭାଇ: | ଚାଲନ୍ତୁ ତାଙ୍କ ଘରକୁ। ତାଙ୍କ ସ୍ତ୍ରୀ ଓ ଝିଅ ଯେତେବେଳେ କାନ୍ଦିବେ, ମୁଁ ଲୁହ ପୋଛି ସାନ୍ତ୍ୱନା ଦେବି। ଆପଣମାନେ ଭିଡ଼ିଓ ରେକର୍ଡ଼ିଂ କରିବେ- ନହେଲେ Still ଫଟୋ ଉଠେଇବେ। ଚାଲନ୍ତୁ...(ସେମାନେ ଗଲେ। ଅନ୍ୟ ପଟୁ ପ୍ରବେଶ କଲେ ଅରକ୍ଷିତ ଡାକୁଆ ଓ ଭୀମା) |
| ଅରକ୍ଷିତ: | ସବୁ ମିଛ କଥାରେ ଭୀମା! କୋଉ ସୋମନାଥ ଫୋମନାଥ ମୂଳା ଚାଷୀ ମରିନି। ଶଳେ ଡ୍ରାମା କରୁଛନ୍ତି। |
| ଭୀମା: | ମୂଳ ଭିଲେନ୍‌ଟା କିଏ କହୁନାହାନ୍ତି? ଶଳାକୁ ଦେବା |

ଥୋପେଇ ଯେ ଇଲେକ୍‌ସନ୍ ସରିଲା ପରେ ଯାଇ ଚେତା ଆସିବ !

ଅରକ୍ଷିତ: ମୂଳା ପୁରେଇ ଦବ ପାଟିରେ ! ଜାଣି ପାରୁନୁ ? ଆରେ ସେ ବୁଲୁଟା କ'ଣ ଏମିତି ମହାପୁରୁଷ ପରି ହଉଚି କିରେ ? ଟୋକାଟା ଯୌନବିକାର ଗ୍ରସ୍ତ ।

ଭୀମା: ସାରେ... ଡେଲି ବରଡ଼ାବିଲି ଯାଇ ସୋମନାଥ ଘରେ ପଶୁଚି ।

ଅରକ୍ଷିତ: ତୁ କ'ଣ ଭାବୁଚୁ ଭୀମା, ସୋମନାଥ ସତରେ ମରିଗଲା ? ଆରେ ତା'ଝିଅ ଫୁକୁଲି କାନ୍ଦିକାନ୍ଦି କୁଆଡ଼େ ତା' ବୁଲୁଭାଇର ଛାତିରେ ମୁଣ୍ଡ ବାଡ଼ୋଉଚି । ଆଉ ତା'ର ଲୁହ ପୋଛୁ ପୋଛୁ ବୁଲୁ ଫୁକୁଲିକୁ ଗେଲ କରି ପକଉଚି ।

ଭୀମା: ଫଟୋ ଦି'ଟରିଟା ଦରକାର ସାରେ ! ଏକାଥରେ ପାର୍ଟି ଭାଙ୍ଗିଯିବ ।

ଅରକ୍ଷିତ: କେମିତି ?

ଭୀମା: ମୁଁ ଶୁଣିଚି ସାରେ ! ବୁଲୁ ସୋମନାଥ ଝିଅ ଫୁକୁଲିର ଜାମା ଭିତରେ ହାତ ପୁରୋଉଚି ।

ଅରକ୍ଷିତ: ଫଟୋ ଉଠେଇ ବଡ଼ ବ୍ୟାନର ସାଇଜ୍ କରି କାନ୍ଥବାଡ଼ରେ ମାରିଦିଅ । ଏକାଥରେ ନେତାଗିରି ଛାଡ଼ିଯିବ । ୟୁ'ଟ୍ୟୁବ୍‌ରେ ଛାଡ଼ିଦିଅ ।

ଭୀମା: ଆଉ ରହିଲା ସେ ସୁମନ୍ତ ମହାନ୍ତି । ଫୁଲ୍‌କୋବି ନେତା । ତା' ବାପ ବିଶ୍ୱାମିତ୍ର ମହାନ୍ତିଙ୍କୁ ଆଣିଚି ସାରେ ! ଡାକିବି ?

ଅରକ୍ଷିତ: ଡାକ !

(ବିଶ୍ୱାମିତ୍ର ମଦ ପିଇ ଟଳମଳ ହେଇ ଆସିଲେ) ନମସ୍କାର ମହାନ୍ତି ବାବୁ !

ବିଶ୍ୱାମିତ୍ର: ନମସ୍କାର !

ଅରକ୍ଷିତ: କୁହନ୍ତୁ, ଆପଣଙ୍କର କି ସେବା କରିପାରେ ?

ବିଶ୍ୱାମିତ୍ର: ମୁଁ ବିଶ୍ୱାମିତ୍ର ମହାନ୍ତି ଏଇ ବର୍ତ୍ତମାନଠାରୁ ବନ୍ଧାକୋବି ଦଳରେ ଯୋଗଦାନ କଲି । ମୁଁ ଭାବୁଚି ଆମ ରାଜ୍ୟ ବର୍ତ୍ତମାନ ଗୋଟେ ଘଡ଼ିସନ୍ଧି ଦେଇ ଗତି କରୁଛି । ଦଳେ ଅଭଦ୍ର ଗୁଣ୍ଡା ଟୋକା ଫୁଲକୋବି ଦଳ ଗଠନ କରି ସିଂହାସନରେ ବସିବା ପାଇଁ

ଚକ୍ରାନ୍ତ କରୁଛନ୍ତି। ଦେଶରେ ମୂଳା ଚାଷୀମାନଙ୍କୁ ଧରି ସମସ୍ତଙ୍କୁ ମୂଳା ଖୁଆଇବାକୁ ବସିଛନ୍ତି! ଏମାନେ କ୍ଷମତାକୁ ଆସିଲେ ସବୁ ଛାରଖାର ହେଇଯିବ। କେବଳ ବନ୍ଧାକୋବି ହିଁ ଦେଶକୁ ଉଦ୍ଧାର କରିବେ ସାର୍!

ଅରକ୍ଷିତ: କିନ୍ତୁ ସମସ୍ତେ ଜାଣନ୍ତି ଆପଣଙ୍କ ପୁଅ ସୁମନ୍ତ ମହାନ୍ତି ଫୁଲ୍‌କୋବି ଦଳର ପ୍ରାର୍ଥୀ ହିସାବରେ ଇଲେକ୍‌ସନ୍ ଲଢୁଛି। ଆମେ ଯଦି ଆପଣଙ୍କୁ ତା' ବିରୁଦ୍ଧରେ ବନ୍ଧାକୋବି ଦଳରୁ ଠିଆ କରେଇବୁ ଆପଣ ଠିଆ ହେବେ?

ବିଶ୍ୱାମିତ୍ର: ଅଲବତ୍ ଠିଆହେବି। ପୁଅ ମତେ ଘରୁ ବାହାର କରିଦେଇଛି।

ଅରକ୍ଷିତ: ଭୀମା! ଗୋଟେ ଫୁଲମାଳ ଆଉଗୋଟେ ଓଢ଼ଣୀ ଚଦର ଯୋଗଡ଼ କର। ୟାଙ୍କୁ ନେଇ ଟି.ଭି.ଚ୍ୟାନେଲରେ ବନ୍ଧାକୋବି ପାର୍ଟି ତରଫରୁ ସମ୍ବର୍ଦ୍ଧନା ଜଣେଇବା...!

(ଦୁଇଜଣ ସ୍ୱେଚ୍ଛାସେବୀ ଗୋଟେ ନାଲିଟୋପି ଓ ଗୋଟେ ଫୁଲମାଳ ନେଇ ଆସିଲେ ଓ ବିଶ୍ୱାମିତ୍ରର ଫଟୋ ଉଠେଇଲେ।)

(ମଞ୍ଚ ଅନ୍ଧାର)

# ସପ୍ତଦଶ ଦୃଶ୍ୟ

ଆଲୋକ ଆସିଲା ପ୍ରତାପ ଜେନା ଘରେ। ଚିତ୍କାର କରୁଥିଲେ ସେ, ହାତରେ କିଛି ଖାଦ୍ୟ।

ପ୍ରତାପ: ଏୟ ! କୁଆଡ଼େ ଗଲା ସେ ଟୋକୀ ! ଏୟ ! ରାଣ୍ଡି ଇଆଡ଼େ ଆ'- (ପ୍ରବେଶ କଲା ବିଉଟି)କ'ଣ ଏଗୁଡ଼ା ରୋଷେଇ କରିଚୁ ? ତତେ ବାରମ୍ବାର କହିଥିଲି, ଆଳୁ ଦି'ଟା ସିଝେଇ ଚକଟି ଦବୁ। ହେଲାନି ? (ଗୋଟେ ଚେପା ଥିବା ଆଳୁ ବାହାର କରି) ଏଇଟା କ'ଣ ?

ବିଉଟି: ମତେ ଆଳୁ ଭରତା ଆସେନା।

ପ୍ରତାପ: ଆସୁନି କ'ଣ ? ଆଳୁ ଚକଟା ଆସୁନି ?

ବିଉଟି: ନା !

ପ୍ରତାପ: ଭାତ ଓଧାଣି ଫୁଟିଲା ବେଳକୁ ଗୋଟେ ଆଳୁକୁ ଭଲଭାବେ ଧୋଇ ତା' ଭିତରେ ପକେଇ ଦବୁ। ଭାତ ଗାଳିଲା ବେଳକୁ ଆଳୁଟାକୁ ବାହାର କରି ଚେପା ଛଡ଼େଇ ଚକଟି ଲୁଣ ଟିକିଏ ପକେଇଲେ ଆଳୁ ଭରତା। ଏତକ ଆସୁନି ?

ବିଉଟି: ଦେଇଚି ତ। ଆଳୁ ଭରତା ସେଇଟା।

ପ୍ରତାପ: ଶଳାକୁ ଚାରି ଲକ୍ଷ ଦେଇକି କିଣିଚି। ଆଲୁ ସିଝାଟାକୁ ଆଲୁ ଭରତା କହୁଚୁ? ଦେବି ଗୋଟେ ଚାପଡ଼ା- ଶଳାର ମୁହଁ ବଙ୍କା ହେଇଯିବ। (ଥୋପାଥିବା ଆଲୁକୁ ଦେଖେଇ) ଏଇଟା ଆଲୁ ଭରତା?

ବିଉଟି: (ଚୁପ୍‌ଚାପ୍ ଠିଆ ହେଲା)

ପ୍ରତାପ: (ଭୀଷଣ ରାଗି ଚାପୁଡ଼ାଏ ମାରିଲେ)

ବିଉଟି: (ଚୁପ୍‌ଚାପ୍ ଠିଆ ହେଇ ରହିଲା)

ପ୍ରତାପ: ଶଳା ଗାଲୁଆ! (ଆଉ ଚାପୁଡ଼ାଏ ମାରିଲା, ବିଉଟିର ପ୍ରତିକ୍ରିୟା ନାହିଁ, ପ୍ରତାପ ଜେନା ଅତି ରାଗି ବିଉଟିକୁ ଭିଡ଼ାଭିଡ଼ି କରି ଧକ୍‌କା ଦେଇ କହିଲା... )

ପ୍ରତାପ: ଭାଗ୍ ଶଳା ଏଇଠୁ! ଆଲୁ ଭରତା ଆସୁନି- ଏଇଠି କରିବୁ କ'ଣ- ଯା'- ପଳେଇ ଯା'- ମୋ' ଘରୁ (ଧକ୍‌କା ମାରି ବାହାର କରିଦେଲା- ସେପଟୁ ବାହାରୁ ଆସିଲା ସୁମନ୍ତ। ବିଉଟି ମାଡ଼ ଖାଇ ସୁମନ୍ତର ପାଦତଳେ ପଡ଼ିଲା। ସୁମନ୍ତ ତାକୁ ଉଠେଇଲା ଆଉ ପଚାରିଲା...)

ସୁମନ୍ତ: ଇଏ କ'ଣ? ତମେ ବିଉଟିକୁ ମାରିଲ କାହିଁକି?

ପ୍ରତାପ: ଆଲୁ ଭରତା ବନେଇ ଆସୁନି। ଶଳା ଚାରି ଲକ୍ଷ ଦେଇ କିଣିଚି।

ସୁମନ୍ତ; ମିଛ କଥା। ବିଉଟି ହାତର ଆଲୁ ଭରତା ନମ୍ବର ୱାନ୍! ମୁଁ ଖାଇଚି।

ପ୍ରତାପ: ତମେ କିଏ ଏଇଠିକି ଆସି ମୋ' କାମବାଲୀକୁ ଧରିବା ପାଇଁ? ମୋ' ଇଚ୍ଛା ଯାହା ତାକୁ କରିବି।

ସୁମନ୍ତ: ମୁଁ ତାକୁ ବର୍ତ୍ତମାନ କିଣିବି।

ପ୍ରତାପ: କାଢ଼େ ପାଞ୍ଚ ଲକ୍ଷ।

ସୁମନ୍ତ: ଆଣିଚି। ନିଅ! (ଟଙ୍କା ଦେଲା। ପ୍ରତାପ ଜେନା ଗଣିବାକୁ ଲାଗିଲା) ଆ' ବିଉଟି! (ବିଉଟିକୁ ଧରି ଚାଲିଗଲା)

ପ୍ରତାପ: ହେଃ! ଶଳା କ୍ରୀତଦାସୀ ସାଙ୍ଗରେ ପ୍ରେମ! ଯାଃ! ଛାଡ଼ିଦେଲି। ହେ ହେ ହେ ହେ-

(ହଠାତ୍ ଆଲୁଅ କଟିଲା। ମଞ୍ଚ ଅନ୍ଧାର)

# ଅଷ୍ଟାଦଶ ଦୃଶ୍ୟ

(ଆଲୁଅ କଟିଲା ଓ ଆସିଲା ଡ଼ିମର୍‌ରେ। ମଞ୍ଚ ଉପରେ ବବ୍‌ଲୁ ଓ ବିୟୁଟି: ଅନ୍ତରଙ୍ଗ ମୁଦ୍ରାରେ।)

ବବ୍‌ଲୁ: ବିଶ୍ୱାସ କର ବିୟୁଟି... ତତେ ମୁଁ କେତେ ଖୋଜିଚି...।

ବିୟୁଟି: ମୁଁ କ'ଣ କରିଥାନ୍ତି ଯେ ? ତମ ମାଇଁ ତ ମତେ ଚାରି ଲକ୍ଷରେ ବିକିଦେଲେ।

ବବ୍‌ଲୁ: ରାଇସ୍ ମିଲ୍ ଚାକିରି, ପଇସା ନଥିଲା ଲୋ'- ଚାରି ଲକ୍ଷ ଏକା ମୁଁ କୋଉଠୁ ଆଣିଥାନ୍ତି ?

ବିୟୁଟି: ଏବେ କୁଆଡୁ ଆଣିଲ ?

ବବ୍‌ଲୁ: ଏବେ ମୁଁ ପଲିଟିକ୍‌ସ୍ କରୁଚି।

ବିୟୁଟି: ଜାଣିଚି। ତମ ଫଟୋ ଖବରକାଗଜରେ ବାହାରୁଚି।

ବବ୍‌ଲୁ: ତୁ ଦେଖି ଖୁସି ହଉଥିଲୁ ନା ?

ବିୟୁଟି: ନାଇଁ, ମତେ ଡର ମାଡୁଚି।

ବବ୍‌ଲୁ: କାଇଁକି ?

ବିୟୁଟି: ବେକରେ ଫୁଲମାଳ ପକେଇ ତମେ ନେତା ହେଇଗଲେ ଆଉ ଗୋଟେ ବଡ଼ ଲୋକର ଝିଅ ତମକୁ ନେଇଯିବ।

ବବ୍‌ଲୁ: ନାଇଁ ଲୋ' ବିୟୁଟି ! ସେମିତି କାଇଁକି ଭାବୁଚୁ ? ବଡ଼ ଲୋକର ଝିଅ କ'ଣ ତୋ' ପରି ଆଲୁ ଭରତା କରି ମୋ'

ପାଇଁ ପଖାଳ କଂସେ ବାଢ଼ି ପାରିବ?

ବିୟୁଟି: ଏ ମା'! ତମେ ନେତା ହବ... ଏମ୍.ଏଲ୍.ଏ. ହବ... ମନ୍ତ୍ରୀ ହବ... ପଲାଉ, ବିରିୟାନୀ, ଚିଲି ପନିର ଖାଇବ-ଆଳୁ ଭରତା କ'ଣ ହବ? (ଆବହ ସଙ୍ଗୀତର କୋରାଲ୍ ହମିଂ)

ବବ୍‌ଲୁ: ନାଇଁ ବିୟୁଟି! ଦି'ଦିନିଆ ପାୱାର ପାଇଁ ତୁ ଭାବୁଚୁ ମୁଁ ପଖାଳ ଭାତ ଆଉ ତୋର ଆଳୁ ଭରତାକୁ ଭୁଲି ଯିବି? କେବେ ନୁହେଁ! (କୋରାଲ୍ ହମିଂ)

ବିୟୁଟି: ବାବ୍‌ଲୁ ଭାଇ! ମୋ' ସୁନା ବାବ୍‌ଲୁ ଭାଇ!

(ବବ୍‌ଲୁକୁ କୁଣ୍ଢେଇ ଧରି ଗୋଟେ ଚୁମା ଦେଇଚି। ହଠାତ୍ କଲିଂ ବେଲ୍ ବାଜିଲା। ଦୁହେଁ ଅଲଗା ହେଇଗଲେ। ବିୟୁଟି ଭିତରକୁ ଚାଲିଗଲା। ବବ୍‌ଲୁ ଦାଣ୍ଡ ଦୁଆର ଖୋଲିଲା, ପ୍ରବେଶ କଲେ ବୁଲୁ ଭାଇ)

ବବ୍‌ଲୁ: ଆରେ ବୁଲୁଭାଇ! ତମେ?

ବୁଲୁଭାଇ: ତୋ' ପାଖରେ କାମ ଥିଲା।

ବବ୍‌ଲୁ: କାମ ଆଉ କ'ଣ? ଆମ ଷ୍ଟ୍ରାଇକ୍ ପରେ ବନ୍ଧାକୋବି ସରକାର ଦିନକୁ ଦିନ ଦୁଇ ଟ୍ରକ୍ ମୂଳା କିଣୁଚି। ଏବେ କୋଉ ଷ୍ଟ୍ରାଇକ୍ ଆଉ କରିବ?

ବୁଲୁ: ଏବେ ଇଲେକ୍‌ସନ୍ ସରିଲା ପରେ ଯାହା କରାଯିବ। ମୋର ପ୍ରଥମ ଚିନ୍ତା- ତୁ' କେମିତି ଇଲେକ୍‌ସନ୍‌ରେ ଜିତିବୁ! ଆଚ୍ଛା...ଏଇଠି ତୋ' ଘରେ ଗୋଟେ ଝିଅ କୁଆଡୁ ଆସିଲା?

ବବ୍‌ଲୁ: ମାନେ... କଥା ହେଲା...

ବୁଲୁ: (ହସିଲା) ପାଞ୍ଚ ଲକ୍ଷ ଦେଇ ସେଇଟାକୁ ତୁ' କିଣିଚୁ!

ବବ୍‌ଲୁ: ତମେ କେମିତି ଜାଣିଲ?

ବୁଲୁ: ଫୁଲ୍‌କୋବି ପାର୍ଟିର ତୁ ଏମ୍.ଏଲ୍.ଏ. କାଣ୍ଡିଡ଼େଟ୍! ତୋ' ବିଷୟରେ ସାରା ଦେଶ ଖବର ରଖୁଚି। ମୁଁ ଜାଣିବିନି? କ'ଣ ସେଇ ଝିଅଟାର ନାଁ ଟି?... ବିୟୁଟି। ଝିଅଟାକୁ ମତେ ଦେଇ ଦେ'। ମୁଁ ଦଶ ଲକ୍ଷ ଦେବି।

ବବ୍‌ଲୁ: ସେମିତି କିମିତି ହବ ବୁଲୁଭାଇ? ତାକୁ ହତଛଡ଼ା କରିବିନି ଆଉ। ଅନେକ ଚକ୍‌କର କାଟିଚି। ଏବେ ତାକୁ ବିକିବାର

ପ୍ରଶ୍ନ ଉଠୁନି। (କୋରାଲ୍ ହମିଂ, ବୁଲୁ ଚିନ୍ତିତ)

ବୁଲୁ: ମୁଁ ତ ଦଶ ଲକ୍ଷ ଦବାକୁ ରାଜି। ଦଶ ଲକ୍ଷରେ ତୁ' ଦିଇଟା କାମବାଲୀ କିଣି ପାରିବୁ। କ'ଣ ଅସୁବିଧା ?

ବବ୍‌ଲୁ: ଟଙ୍କାଟା କ'ଣ ବଡ଼ କଥା ବୁଲୁଭାଇ ? ବିୟୁଟି ସାଙ୍ଗରେ ତମର କାମ କ'ଣ ?

ବୁଲୁ: ଆଜିର ଖବରକାଗଜ ଦେଖିଚୁ ?

ବବ୍‌ଲୁ: କ'ଣ ଖବର ?

ବୁଲୁ: ଏ ଶଳା ବନ୍ଧାକୋବି ଦଳର ମୋ' ନାଁରେ ସେକ୍‌ସ ସ୍କାଣ୍ଡାଲ୍ କରିଛନ୍ତି। (ଖବରକାଗଜଟା ଖୋଲି ଦେଖେଇଲେ। ଖବରଟେ ଦେଖି ଘୁଞ୍ଚିଗଲା ବବ୍‌ଲୁ)

ବବ୍‌ଲୁ: ଇଏ କ'ଣ ? ଇଏ କ'ଣ ବୁଲୁଭାଇ ? ତମେ କ'ଣ ସେ ଝିଅଟାର ବ୍ଲାଉଜ ଭିତରେ ହାତ ପୁରେଇଛ ? (ହସିଲା) କିଏ ଏ ଝିଅଟା ? ସେ ମୂଳା ଚାଷୀ ସୋମନାଥ ସ୍ୱାଇଁର ଝିଅ ଫୁଲକି ?

ବୁଲୁ: ତୁ କେମିତି ଚିହ୍ନିଲୁ ତାକୁ ?

ବବ୍‌ଲୁ: ଆଉ ଥରେ- ଏଇ ଖବରକାଗଜରେ, ତମର ଆଉ ଗୋଟେ ଫଟୋ ବାହାରିଥିଲା। ତମେ ସେଇ ଝିଅଟାକୁ ପଛଆଡୁ କୁଣ୍ଢେଇ ଧରିଥିଲ ଓ ଝିଅଟା କାନ୍ଦୁଥିଲା, କଥା କ'ଣ ବୁଲୁ ଭାଇ ?

ବୁଲୁ: ଆରେ ତା' ବାପ ମରିଗଲା ବୋଲି କାନ୍ଦୁଥିଲା ଝିଅଟା। ମୁଁ ତାକୁ ସାନ୍ତ୍ୱନା ଦଉଥିଲି। ଏ ବନ୍ଧାକୋବିବାଲା ସଜ ମାଛରେ ପୋକ ପକାଉଛନ୍ତି।

ବବ୍‌ଲୁ: ଆଉ ଏଇ ଯୋଉ ତା' ବ୍ଲାଉଜ ଭିତରେ ହାତ ପୁରେଇଚ ?

ବୁଲୁ: ପିମ୍ପୁଡ଼ି, ପିମ୍ପୁଡ଼ି ଉପଦ୍ରବ। ଝିଅଟା ଏକଲା ଠିଆ ହେଇଚି ଏବଂ କୌଣସି କାରଣରୁ ଚାରି ପାଞ୍ଚଟା ନାଲି ପିମ୍ପୁଡ଼ି ତା' ବ୍ଲାଉଜ ଭିତରେ ପଶି କାମୁଡୁଛନ୍ତି ତାକୁ। ଝିଅଟା ଚିତ୍କାର କରି କହୁଚି... 'ରକ୍ଷା କର !' କ'ଣ ଆଉ କରିଥାନ୍ତି ? ପୁଅ ହେଉ କି ଝିଅ ହେଉ... ସମସ୍ତଙ୍କର ସେବା କରିବା ପାଇଁ ଏ ବୁଲୁଭାଇ ଅଛି ନା ନାଇଁ ?

ବବ୍‌ଲୁ: ଅଛି ଯେ- ଏ ଇଲେକ୍‌ସନ୍ ସମୟରେ ତମ ନାଁରେ ଏ ସ୍କାଣ୍ଡାଲଟା... ବହୁତ ମହଙ୍ଗା ପଡ଼ିବ ବୁଲୁଭାଇ!

ବୁଲୁ: ତୁ' କ'ଣ କହିବାକୁ ଚାହୁଁଚୁ?

ବବ୍‌ଲୁ: ବିପନ୍ନ ନାରୀକୁ ଉଦ୍ଧାର କରିବାକୁ ହେଲେ ତା'ର ବ୍ଲାଉଜ ଭିତରେ ହାତ ପୁରେଇବା ଆଦୌ ଦରକାର ନାଇଁ- ବୁଲୁ ଭାଇ! ମୁଁ ବି ତ ଦିନେ ଗୋଟେ ଗୋଟେ ବିପନ୍ନ ନାରୀକୁ ଉଦ୍ଧାର କରିଥିଲି। ମୁଁ କ'ଣ ତା' ଜାମା ଭିତରେ ହାତ ପୁରେଇଥିଲି? ଛିଃ! ଏଗୁଡ଼ା ଅସଭ୍ୟତା! ମେମ୍ବରମାନେ କହୁଛନ୍ତି: ତମକୁ ଫୁଲକୋବି ଦଳରୁ ବାହାର କରିଦେବେ।

ବୁଲୁ: ହେଃ! ଫୁଲକୋବି ଦଳ ମୁଁ ଗଢ଼ିଚି।

ବବ୍‌ଲୁ: ହେଃ କ'ଣ? ତମକୁ ସେମାନେ ବହିଷ୍କାର କରିବେ। ସବୁଠୁ ଭଲ ହବ- ତମେ ରିଜାଇନ୍ କର।

ବୁଲୁ: କାହିଁକି? ମୁଁ ଏ ଦଳର ପ୍ରତିଷ୍ଠାତା। ମତେ କିଏ ବହିଷ୍କାର କରିବ?

ବବ୍‌ଲୁ: ନେତାମାନଙ୍କୁ ଯେମିତି ବହିଷ୍କାର କରାଯାଏ- ସେମିତି କରାଯିବ।

ବୁଲୁ: ମାନେ? (କାନ୍ଦକାନ୍ଦ ସ୍ୱରରେ) ତମେମାନେ ମତେ ବିଶ୍ୱାସ କରୁନା? କେମିତି ମୋ' ଦଳରୁ ମତେ ବହିଷ୍କାର କରିବ?

ବବ୍‌ଲୁ: ପାର୍ଟି ଅଫିସର ମେନ୍ ଗେଟ୍ ପାଖରେ ତମେ ଠିଆ ହବ ଆଉ ଆମେ ଦଳର ସଭ୍ୟମାନେ ତମକୁ ଧକ୍‌କା ଦେଇ ବାହାର କରିଦବୁ। ମାନେ ତମେ ଯେମିତି ତଳେ ନ ପଡ଼ିଯାଅ- ଆମେ ଆସ୍ତେକିନା ଧକ୍‌କା ମାରିବୁ। ତମେ କିନ୍ତୁ ବାହାରିଯିବା ପାଇଁ ବାଧ୍ୟ। ସାମ୍ବାଦିକ ଆଉ ଫଟୋଗ୍ରାଫର ରହିବେ। ସାଧାରଣ ଲୋକେ ବି ରହିବେ। ସମସ୍ତେ ଜାଣିବେ ତମକୁ ଦଳରୁ ବହିଷ୍କାର କରାଗଲା ଏବଂ ଜାଣିବେ ବହିଷ୍କାର କରାଗଲା ଯୌନ ଅପରାଧ ପାଇଁ।

ବୁଲୁ: (କାନ୍ଦି ପକାଇଲେ) ବବ୍‌ଲୁ! ସତରେ ଏୟା କରିବ ତମେ ସବୁ?

ବବ୍‌ଲୁ: ଇଲେକ୍‌ସନ୍ ଆଉ ୧୫ ଦିନ ରହିଲା ବୁଲୁଭାଇ। ଏ

ଅବସ୍ଥାରେ ତମ ସ୍କାଣ୍ଡାଲ୍ ପାର୍ଟିକୁ ବୁଡ଼େଇ ଦବ। ପାର୍ଟିକୁ ରକ୍ଷା କରିବା ପାଇଁ ଏୟା ହିଁ କରିବାକୁ ହବ। (ଫୋନ୍ ଆସିଲା) ଆଚ୍ଛା... କ'ଣ ହେଲା? ୫୦ ଜଣ? ଆଚ୍ଛା ମୁଁ ଯାଉଚି। ଓ.କେ.। (ଆବହ ସଙ୍ଗୀତରେ ଉତ୍କଣ୍ଠା)

ବୁଲୁ: କ'ଣ ହେଇଚି?

ବବ୍‌ଲୁ: ପଚାଶ ଜଣ ସଭ୍ୟ ତମର ଇସ୍ତଫା ଦାବି କରି ପାର୍ଟି ଅଫିସ ଘେରାଉ କରିଛନ୍ତି। କ'ଣ କରାଯିବ?

ବୁଲୁ: ତୁ' ସେମାନଙ୍କୁ ବୁଝା ବାବ୍‌ଲୁ! ସେମାନଙ୍କୁ କହ ଫୁଲକୋବି ଦଳ ଯୌନ ସ୍କାଣ୍ଡାଲ୍ କରିବା ପାଇଁ ନାଇଁ, ଅଛି ଅସହାୟ ବିପନ୍ନ ନାରୀମାନଙ୍କର ସମ୍ଭ୍ରମ ରକ୍ଷା କରିବା ପାଇଁ। ତୋ ନିଜର ଉଦାହରଣ ଦେ'। କହ... ତୁ ଜଣେ ବିପନ୍ନ ନାରୀକୁ କିପରି ବନ୍ୟଜନ୍ତୁମାନଙ୍କୁ ପାଖରୁ ରକ୍ଷା କରିଚୁ।

ବବ୍‌ଲୁ: କିନ୍ତୁ ବୁଲୁଭାଇ, ତମ ନାଁରେ ଏଇ ଯୋଉ ସେକ୍‌ସ ସ୍କାଣ୍ଡାଲ ହେଲା, ତା'ପରେ ଲୋକେ ମୋର ସେ ଷ୍ଟୋରୀଟା ଭୁଲିଗଲେଣି।

ବୁଲୁ: ତା'ହେଲେ ଗୋଟେ କାମ କର। ତୁ' ସେ ଝିଅଟାର ଇଜ୍ଜତ ବଞ୍ଚେଇବାକୁ ଯାଇ କେମିତି ମାଡ଼ ଖାଇଲୁ, ସେ ସିନ୍‌ଟା ସୁଟିଂ କରି ୟୁ-ଟ୍ୟୁବ୍‌ରେ ଛାଡ଼େ।

ବବ୍‌ଲୁ: କୋଉ ସିନ୍‌ଟା?

ବୁଲୁ: ଦଳେ ବନ୍ଧାକୋବି ଦଳର କର୍ମୀ ଗୋଟେ ଝିଅକୁ ଏକଲା ରାସ୍ତାରେ ପାଇ ବଳାତ୍କାର କରୁଥିଲେ। ସେଇ ବାଟ ଦେଇ ଫୁଲକୋବି ଦଳର ପତାକା ନେଇ ତୁ ଯାଉଥିଲୁ।

ବବ୍‌ଲୁ: ତା'ପରେ?

ବୁଲୁ: ଝିଅଟା ଭୟରେ ଚିତ୍କାର କରିବ... 'ବଞ୍ଚାଅ! କିଏ କୋଉଠି ଅଛ ରକ୍ଷା କର!'

ବବ୍‌ଲୁ: ସେଇଠୁ?

ବୁଲୁ: ତୁ' ଚିତ୍କାର କରି ସେଇ ଗୁଣ୍ଡାମାନଙ୍କ ଉପରକୁ ଡେଇଁ ପଡ଼ିବୁ। ତା'ପରେ ଫାଇଟିଂ। ଝିଅଟାକୁ ରକ୍ଷା କରିବୁ। ବାସ୍! ଏଇ ଦୃଶ୍ୟଟାକୁ ସୁଟିଂ କରି ୟୁ-ଟ୍ୟୁବ୍‌ରେ ଭାଇରାଲ୍ କରି

ଛାଡ଼ିବାକୁ ପଡ଼ିବ। ଅନ୍ୟ ବାଟ ନାହିଁ।

ବବ୍ଲୁ: ତା'ମାନେ ହିରୋଇନ୍‌ଟେ ଦରକାର ଆଉ ଧର୍ଷଣ କରିବା ପାଇଁ ମିନିମମ୍ ପାଞ୍ଚଟା ଗୁଣ୍ଡା... କୋଉଠୁ ମିଳିବେ ମୋ' ରୋଲ୍‌ଟା ମୁଁ କରିଦେବି, ଗୁଣ୍ଡା ?

ବୁଲୁ: ଗୁଣ୍ଡା ରୋଲ୍ କରିବା ପାଇଁ ସମସ୍ତେ ରାଜି, ମିଳିଯିବେ।

ବବ୍ଲୁ: ହିରୋଇନ୍ ?

ବୁଲୁ: ସେଇଥିପାଇଁ ତ ! ତୋର କାମବାଲୀକୁ କହ, ଧର୍ଷିତା ଝିଅ ରୋଲ୍‌ଟା ସିଏ କରିବ।

ବବ୍ଲୁ: ପଇସା ମାଗିବ !

ବୁଲୁ: ଯେତେ ପଇସା ଚାହିଁବ- ସେତେ ମିଳିବ।

(ବବ୍ଲୁ ଭିତରେ ଥିବା ବିୟୁଟିକୁ ଡାକିଲା-)

ବବ୍ଲୁ: ବିୟୁଟି ! ଏ ବିୟୁଟି ! ଟିକିଏ ଆସିଲୁ ଏଇଠିକି !

(ପ୍ରବେଶ କଲା ବିୟୁଟି ! ହାତରେ ଦୁଇ କପ୍ ଚା')

ବିୟୁଟି: ସାର୍ ନମସ୍କାର ! ଚା' ପିଅନ୍ତୁ।

ବୁଲୁ: ଆମେ ଗୋଟେ ପନ୍ଦର ମିନିଟ୍‌ର ଛୋଟ ଫିଲ୍ମ କରୁଚୁ। ୟୁ-ଟ୍ୟୁବ୍‌ରେ ରିଲିଜ୍ ହବ। ତୁ ହିରୋଇନ୍ ରୋଲ୍ କରିବୁ ?

ବିୟୁଟି: କାହାଣୀଟା କ'ଣ ?

ବୁଲୁ: ତୁ କାମ ସାରି ଘରକୁ ଫେରୁଥିଲୁ। ରାସ୍ତାରେ ଆଲୁଅ ନଥିଲା। ହଠାତ୍ ପାଞ୍ଚ ଜଣ ଗୁଣ୍ଡା ତତେ ଆକ୍ରମଣ କଲେ।

ବିୟୁଟି: ଏକାଥରେ ପାଞ୍ଚ ଜଣ ? କ'ଣ ରେପ୍ କରିବେ ? ଏ ମା' ! ପାଞ୍ଚ ଜଣ ରେପ୍ କରିବେ ଯଦି ପାଞ୍ଚ କୋଟି ନେବି।

ବୁଲୁ: ଡନ୍ ! ଦିଆଯିବ। ତତେ ଧର୍ଷଣ କରିବା ପୂର୍ବରୁ ତୋ' ଶାଢ଼ିଟାକୁ ଦେହରୁ ବାହାର କରି ନେଇଯିବେ।

ବିୟୁଟି: ତା'ମାନେ ? ମୁଁ ପେଟିକୋଟ- ସାୟା ପିନ୍ଧିଥିବି ?

ବୁଲୁ: ହଁ।

ବିୟୁଟି: ଆଉ ପଚାଶ ଲକ୍ଷ ଲାଗିବ।

ବୁଲୁ: ଦିଆଯିବ। ତା'ପରେ ସେମାନେ ତୋର ବ୍ଲାଉଜ ଚିରିଦେବେ।

ବିୟୁଟି: ଏ ମା' ! ତା' ପରେ ?

ବୁଲୁ: ତା'ପରେ ତୁ ଖୁବ୍ ଜୋର୍‌ରେ ଆର୍ତ୍ତନାଦ କରି କହିବୁ- 'ରକ୍ଷା କର! କିଏ କୋଉଠି ଅଛ ରକ୍ଷା କର। ବଞ୍ଚାଅ ମତେ!' (ବିୟୁଟି ସଂଳାପଟିକୁ ପୁରା ଆବେଗ ସହ ଅଭିନୟ କରି କହିବ)

ବୁଲୁ: ଭେରି ଗୁଡ୍! ବଢ଼ିଆ।

ବିୟୁଟି: ତା'ପରେ?

ବୁଲୁ: ବବ୍‌ଲୁ ସେଇବାଟେ ଫୁଲ୍‌କୋବି ପାର୍ଟିର ପତାକା ଧରି ଯାଉଥିବ। ତୋ' ଚିତ୍କାର ଶୁଣି ଗୁଣ୍ଡାମାନଙ୍କ ଉପରକୁ ଝାମ୍ପି ପଡ଼ିବ। ତୋର ଫୁଙ୍ଗୁଳା ଦେହରେ ପାର୍ଟିର ବଡ଼ ପତାକାଟା ଘୋଡ଼େଇ ଦବ।

ବିୟୁଟି: ମୁଁ ଡାକିଲା ମାତ୍ରେ ଜଲ୍‌ଦି ଆସିବ ନା ବବ୍‌ଲୁ ଭାଇ?

ବବ୍‌ଲୁ: ସାଙ୍ଗେ ସାଙ୍ଗେ ଚାଲି ଆସିଲେ ଟି.ଆର୍.ପି. କମିଯିବ। ସେଥିପାଇଁ କମର୍‌ସିଆଲ୍ ଦୃଷ୍ଟିରୁ ମୁଁ ଆସୁ ଆସୁ ଟିକିଏ ଡେରି ହେଇପାରେ।

ବିୟୁଟି: ତା'ହେଲେ ରେଟ୍ ବେଶୀ ଲାଗିବ।

ବୁଲୁ: କେତେ ବେଶୀ?

ବିୟୁଟି: ଆଉ ପଚାଶ ଲକ୍ଷ।

ବୁଲୁ: ତା'ମାନେ ମୋଟ ଛ'କୋଟି ନବୁ? ଠିକ୍ ଅଛି। କିନ୍ତୁ ଦୃଶ୍ୟଟାକୁ ଥରେ ରିହାରସଲ୍ କରିବାକୁ ପଡ଼ିବ।

ବିୟୁଟି: ଏଇଠି କରିବ ତ? ଠିକ୍ ଅଛି।

ବବ୍‌ଲୁ: କ୍ୟାମେରାମ୍ୟାନ୍ କିଏ?

ବୁଲୁ: ଆରେ ସେ ଯୋଉ ସାମ୍ବାଦିକଟା ଆସିଥିଲା- ତା' ପାଖରେ ତ ବଢ଼ିଆ XA ୫୫ କ୍ୟାମେରା ଅଛି। ବଢ଼ିଆ ହବ, ମୁଁ ଯାଇ ତାକୁ ଡାକି ଆଣୁଚି।

ବିୟୁଟି: ଆଉ ସେ ରେପ୍ କଲାବାଲା ଭିଲେନ୍?

ବୁଲୁ: ମୁଁ ଦେଖୁଚି। ନହେଲେ ଗୋଟେ ଆଡ୍ (Ad) ଛାଡ଼ିଦେବା ଟି.ଭି.ରେ। ଆଗ ସେ କ୍ୟାମେରା ମେନ୍‌କୁ ଡାକେ। (ବୁଲୁ ଚାଲିଗଲା)

# ଊନବିଂଶ ଦୃଶ୍ୟ

ମଦନା ଡାକୁଆର କେଶ କର୍ତ୍ତନାଳୟ। ପଡ଼ିଶାରେ ନରି ମଉସାଙ୍କ ଦୋକାନ। ଅରକ୍ଷିତ ଡାକୁଆ ଗ୍‌ଲ’ ପିଉଛନ୍ତି।

ନରି: ଫୁଲକୋବି ବାଲା ଫିଲ୍ମ କରୁଛନ୍ତି, ଆପଣ ଗୋଟେ କରୁନାହାନ୍ତି ସାର୍?

ଅରକ୍ଷିତ: ଫିଲ୍ମ? ସାହୁଏ ମୁଁ କିଏ ଫିଲ୍ମ କିଏ ହୋ? ଏଗୁଡ଼ା କରିବାକୁ କ’ଣ ବଅସ ଅଛି?

ମଦନା: (କ୍ଷୁର ଘଷୁ ଘଷୁ: ତା’କେବିନ୍ ଭିତରୁ) ଦାଦା ନମସ୍କାର!

ଅରକ୍ଷିତ: ନମସ୍କାର! ବୁଢ଼ାଟିଏ ହେଇ ଥା’!

ମଦନା: ମତେ ଗୋଟେ ରୋଲ୍ ମିଳିଚି ଦାଦା! ଆଜି ମୁଁ ସୁଟିଂକୁ ଯିବି।

ଅରକ୍ଷିତ: କିରେ କି ରୋଲ୍ କରିବୁ?

ମଦନା: ‘ଭିଲେନ୍’, ଦାଦା! ମୋର ନିଶ ନାଇଁ! କ୍ରେପ୍ ନିଶ ଲଗେଇ ଗୋଟେ ଝିଅକୁ ରେପ୍ କରିବାକୁ ପଡ଼ିବ। ନରି ମଉସା! କହିବ ଯଦି ତମ ନାଁ ଟା ରଖିଦେବି।

ନରି: କିରେ ତୁ କ’ଣ ସେଇ ସିନେମାବାଲାଙ୍କୁ ଜାଣିଚୁ?

ମଦନା: ଆମ ସୁମନ୍ତ ମହାନ୍ତି ପରା ସିନେମାର ହିରୋ!

(ପ୍ରବେଶ କଲା ଭୀମା, ଭଲ ଡ୍ରେସ୍ ପିନ୍ଧିଛି ।)

ଭୀମା: ସାର୍ ନମସ୍କାର !

ଅରକ୍ଷିତ: ନମସ୍କାର, ନମସ୍କାର ! କ'ଣ ଭୀମ ବାବୁ, କୁଆଡ଼େ ଟୁର୍‌ରେ ବାହାରିଲ କି ? ଗୁହାଳପଡ଼ା ପଞ୍ଚାୟତ ସମିତି ଇଲେକ୍‌ସନ୍‌କୁ ?

ଭୀମା: କାଲି ଯାଇଥିଲି ସାର୍ ! ଆମ ବନ୍ଧାକୋବି ପାର୍ଟିର ସ୍ଥିତି ମଜଭୁତ ।

ଅରକ୍ଷିତ: ଆଉ ତା'ହେଲେ ଧୋତି ପଞ୍ଜାବୀ ନ ପିନ୍ଧି ଆଜି କ'ଣ ଟ୍ରାଉଜର୍ ପିନ୍ଧିଚ ? କୁଆଡ଼େ ବାହାରିଲ କି ?

ଭୀମା: ଗୋଟେ ସିନେମାବାଲା ଆସିଥିଲା ସାର୍ ! ଗୋଟେ ରୋଲ୍ କରିବାକୁ ଡକେଇଚନ୍ତି ମତେ ।

ଅରକ୍ଷିତ: ଏଁ ! (ହସିଲେ) ତମେ କ'ଣ ରୋଲ୍ କରିବ ହେ ?

ଭୀମା: ଆଜ୍ଞା, ଗୋଟେ ରେପ୍ ସିନ୍ ହବ । ଗୋଟେ ଝିଅକୁ ଗ୍ୟାଙ୍ଗ୍ ରେପ୍ କରାଯିବ । ମୁଁ ତା'ର ଲିଡ଼ର । ଯାଉଚି ସୁଟିଂକୁ ।

ଅରକ୍ଷିତ: ଓ ! ବୁଝିଲି, ବୁଝିଲି ! ସେ ଫୁଲ୍‌କୋବି ବୁଲୁ କୁଆଡ଼େ ସିନେମା କରୁଚି । ତମେ ବନ୍ଧାକୋବି ବାଲାଙ୍କୁ କେମିତି ଡାକିଲା ? ନିଶ୍ଚୟ କିଛି ପଲିଟିକ୍‌ସ୍ ଥିବ ! ତମେ ଆମ ବନ୍ଧାକୋବି ଦଳ ସହ... !

ଭୀମା: କ'ଣ ମିଳିବ ସାର୍ ସେ ପଲିଟିକ୍‌ସ୍‌ରୁ ? ମୁଁ ମୋର ସିନ୍‌ଟା କରିଦେଇ ଆସିବି ।

ଅରକ୍ଷିତ: କ'ଣ ଡାଇଲଗ୍ କହିବ ନା ବଜାବଜି ଅଛି ?

ଭୀମା: ଫାଇଟିଙ୍ଗ୍ ଅଛି ସାର୍ !

ଅରକ୍ଷିତ: ତମେ ଫାଇଟିଙ୍ଗ୍ କରିବ ? ଦେଖ... ବନ୍ଧାକୋବିର ଆସିଷ୍ଟାଣ୍ଟ୍ ପ୍ରଭାରୀ ତମେ !

ଭୀମା: ଅନେକ ଦିନ ତଳେ ଗୋଟିଏ ଫିଲ୍ମରେ କରିଥିଲି ସାର୍ ! ଫାଇଟ୍ ମାଷ୍ଟର ବମ୍ବେରୁ ଆସିଥିଲା । ମୁଁ ତା' ସାଙ୍ଗରେ ଛ' ଦିନ କାମ କରି ସବୁ ଶିଖି ଯାଇଚି ।

ଅରକ୍ଷିତ: ହଉ ଯାଅ- ଦେଖ... ପାର୍ଟିର ଯେମିତି ବଦନାମ୍ ନ ହୁଏ ।

ଭୀମା: ତା'ହେଲେ ସାର୍ ଗୋଟେ ଉପାୟ ଅଛି । ଉପାୟଟା ହେଲା

ଭିଲେନ୍‌ମାନେ ଏମିତିକା ଡ୍ରେସ୍ ନପିନ୍ଧି ଭାଲୁ, ମାଙ୍କଡ଼, ହେଟାବାଘ ପୋଷାକ ପିନ୍ଧି ରେପ୍ କରିବେ।

ଅରକ୍ଷିତ: ପ୍ରତ୍ୟୁସର ପରା ସେ ବୁଲୁ! ସେଇଟା କ'ଣ ରାଜି ହବ?

ଭୀମା: ଯାଉଛି ସାର୍! ତାଙ୍କୁ ରାଜି କରେଇବା ବାଁ ହାତର ଖେଳ। ଆଉ ଶୁଣିଲ... ଆମଠୁ ଝିଅଟାକୁ ଛଡ଼େଇ ନବା ପାଇଁ ସୁମନ୍ତ ମହାନ୍ତି ଆସୁଚି। ସେ ଶଳା ତମ ଗାଁ ବିଶିଆ ଭାଇ ପୁଅ, ବିଶ୍ୱାମିତ୍ର ମହାନ୍ତି ସାର୍, ତାର ଅବସ୍ଥା ଖରାପ ହେଇଯାଇପାରେ।

ଅରକ୍ଷିତ: ଓ! ସୁମନ୍ତ? ସୁମନ୍ତ ତ ଆମ ମଦନା ଦୋକାନରେ ଚୁଟି କାଟିବାକୁ ଆସେ। ସିଏ ଆସିବ ତମ ସାଙ୍ଗରେ ଟକ୍‌କର ଦେବାକୁ?

ନରି: ସାର୍ ସୁମନ୍ତ ପରା ବାଇ ଇଲେକ୍‌ସନ୍‌ରେ ଫୁଲ୍‌କୋବି ଦଳ ପକ୍ଷରୁ ଏମ୍.ଏଲ୍.ଏ. ପାଇଁ ଲଢୁଛି। ସମସ୍ତେ କହୁଛନ୍ତି ଜିତିଯିବ ସାର୍!

ଅରକ୍ଷିତ: ସାହୁଏ! ଏଇଠି ଅରକ୍ଷିତ ଡାକୁଆ ଅଛି- ବନ୍ଧାକୋବି ପାର୍ଟିର ବ୍ୟୂହ ଭିତରକୁ ପଶିବା କାଠିକର ପାଠ ହେଇଯିବ। ଜାଣିଥା'!

ଭୀମ: ଖାଇବ ଶଳା ମୋ' ଠୁ! ମୋ' ନାଁରେ ଏଫ୍.ଆଇ.ଆର୍. ଦେଇଥିଲା। ହଉ ସାର୍! ମୁଁ ଆସୁଚି। ତେଣେ ଡେରି ହେଇଯିବ। (ଚାଲିଗଲା)

## ବିଂଶ ଦୃଶ୍ୟ

(ଆଲୁଅ ଆସିଲା ବେଳକୁ ପ୍ରବେଶ କରୁଛନ୍ତି ବୁଲୁଭାଇ। ତାଙ୍କ ପଛରେ ସାମ୍ବାଦିକ-୧ କ୍ୟାମେରା ଧରିଛନ୍ତି ଓ ସାମ୍ବାଦିକ-୨ ଟ୍ରାଇପଡ୍ ଧରି ପ୍ରବେଶ କଲେ।)

ବୁଲୁ: କ'ଣ ସାମ୍ବାଦିକ ସାର୍! ଏଇ କ୍ୟାମେରାରେ ସୁଟିଂ ହେଇପାରିବନି ?

ସାମ୍ବାଦିକ-୧ : କାଇଁକି ହେଇପାରିବନି ସାର୍ ? ୟୁ-ଟ୍ୟୁବ୍‌ରେ ଛାଡ଼ିବେ ଟି ? ଆଉ କ'ଣ କଳିଙ୍ଗ ଷ୍ଟୁଡ଼ିଓରୁ। ୬ m.m. କ୍ୟାମେରା ଭଡ଼ାରେ ଆଣିବେ ? ବରବାଦ ହେଇଯିବେ ସାର୍!

ସାମ୍ବାଦିକ-୨ : ଦେ'... ମତେ ଦେ'! (କ୍ୟାମେରାଟା ସାମ୍ବାଦିକ-୧ ଠାରୁ ଆଣି ଟ୍ରାଇପଏଡ୍ ଉପରେ ଥୋଇ ପୋଜିସନ୍ ନେଲେ) କୁହନ୍ତୁ ସାର୍! ଆପଣଙ୍କ ଆର୍ଟିଷ୍ଟ କାହାନ୍ତି ? ହିରୋଇନ୍ କାଇଁ ?

ବୁଲୁ: ରେଡ଼ି ?

| | |
|---|---|
| ସାମ୍ବାଦିକ: | ରେଡ଼ି ସାର୍ ! |
| ବୁଲୁ: | ରେଡ଼ି: ଏଭ୍ରିବଡ଼ି ! ଷ୍ଟାର୍ଟ ! (ମଞ୍ଚର ଆଲୋକ ବଦଳିଲା। ଗୋଟିଏ ଲୋକପ୍ରିୟ ପପ୍ ଗୀତର ସ୍ୱର ପ୍ଲେ' କରାଯିବ। ଯଥା: ଲୈଲା ମେଁ ଲୈଲା... ଯୈସୀ ହୁଁ ଲୈଲା, ହର୍ କୋଇ ଚହେ ମୁଝ୍‌ସେ ମିଲ୍‌ନା ଅକେଲା.... (ମ୍ୟୁଜିକ୍) ଏଇ ଗୀତରେ ନାଚି ନାଚି ପ୍ରବେଶ କଲା ବିଉଟି। ବୋଧେ ସେ ଗାଇ ଗାଇ ରାସ୍ତାରେ ଆସୁଥିଲା। ରାସ୍ତାଟି ଅନ୍ଧାର ହେଇଥିଲା। ଜଣ ଜଣ କରି ଛ' ଜଣ ଗୁଣ୍ଡା ହାତରେ ମଦ ବୋତଲ ଧରି ନାଚିନାଚି ତାକୁ ଘେରିଯିବେ। ସେ ଛ'ଜଣ ହେଲେ: (୧) ଭୀମା ବେହେରା, (୨) ଖୋକା କାନୁନ୍‌ଗୋ, (୩) ମଦନା ବାରିକ, (୪) ନରି ସାହୁ ଓ (୫) ସପ୍ତମ ଦୃଶ୍ୟର ଗୁଣ୍ଡା-୧, (୬) ସପ୍ତମ ଦୃଶ୍ୟର ଗୁଣ୍ଡା-୨ ଏବଂ ଦରକାର ପଡ଼ିଲେ ପ୍ରତାପ ଜେନା ମଧ ଆସିପାରନ୍ତି। ଏମାନଙ୍କ ମଧ୍ୟରୁ ଜଣେ ଭାଲୁ, ଜଣେ ହେଟା, ଜଣେ ମାଙ୍କଡ଼, ଜଣେ ବାଘ ଓ ଜଣେ ସିଂହ ପୋଷାକ ପିନ୍ଧିବେ। ତା'ପରେ ମଦ ଖାଇ ବିୟୁଟିର ବିଭିନ୍ନ ଅଙ୍ଗକୁ ଛୁଇଁ ଶାଢ଼ି ଟଣାଟଣି କରିବେ। ବିୟୁଟି ରାଗିଯାଇ କହିବ:) |
| ବିୟୁଟି: | କିଏ ? କିଏ ତମେମାନେ ? |
| ଭୀମା: | ଶ୍ୱାପଦ ! (ଏବଂ ହସିଲା ଯାତ୍ରା ଶୈଳୀରେ। ଟାଣି ଦେଲା ଛାତି ଉପରେ ଘୋଡ଼େଇ ହେଇଥିବା ଶାଢ଼ିର ଆଞ୍ଚଲ୍।) |
| ବିୟୁଟି: | ଇଏ କ'ଣ ? ଅଭଦ୍ରଙ୍କ ଭଳି କାଇଁକି ହଉଚ ? କିଏ ତମେମାନେ ? କ'ଣ ଚହୁଁଚ ମୋ' ଠୁ ? ଏମିତି କାହିଁକି କରୁଚ ମତେ ? (ଜଣେ ବିୟୁଟିର ହାତକୁ ଧରି ଟାଣିଲା। ବିୟୁଟି ଚିତ୍କାର କଲା...) |
| ଗୁଣ୍ଡା-୧ : | ଆ'- ସେ ଘର ଭିତରକୁ। |
| ଗୁଣ୍ଡା-୨ : | ଆରେ ନେଇ ଯା ସେ ସାମ୍ନା କୋଠାକୁ। କୋଠା ତିଆରି ହେଇଯାଇଚି। ଦୁଆର କବାଟ ଲାଗିନି। |
| ଗୁଣ୍ଡା-୩: | ଆବେ ! ଦେଖୁଚୁ କ'ଣ ? (ସେମାନେ ଟାଣିଲେ ଓ ବିୟୁଟି ଚିତ୍କାର କଲା) |

ବିୟୁଟି: ଏ ମା'! ଇଏ କ'ଣ... (ଟାଣିଲେ)- ଆ'... ତମ ଗୋଡ଼ ତଳେ ପଡୁଚି... ଛାଡ଼ିଦିଅ ମତେ! (ଗୁଣ୍ଡା-୪ ତା' ଦେହରୁ ଶାଢ଼ି ଖୋଲି ନେଲା। ଚିତ୍କାର କଲା ବିୟୁଟି, ଆତଙ୍କିତା...।) କିଏ ଅଛ କୋଉଠି... ବଞ୍ଚାଅ ମତେ... ବଞ୍ଚାଅ... ବଞ୍ଚାଅ... ବବ୍‌ଲୁ ଭାଇ... ବଞ୍ଚାଅ ମତେ... ବବ୍‌ଲୁ...ବବ୍‌ଲୁ ଭାଇ...! (ଗୁଣ୍ଡାମାନେ ଫେରିଗଲେ। ଭୀମା ହସିଲା।)

ଭୀମା: ଉଠେଇ ନିଅ ବେ ଶଳାକୁ। ଲୈଲା ଦେଖଉଚି!

(ପ୍ରବେଶ କଲା ଗୋଟିଏ ଡିଆଁରେ ସୁମନ୍ତ। ଭୀମା ତାକୁ ଫୋପାଡ଼ି ଦେଲା। କଚଡ଼ି ହେଇ ପଡ଼ିଲା ସୁମନ୍ତ, ତା'ପରେ ଉଠି ଛଡ଼େଇବାକୁ ଗଲା ବିୟୁଟିକୁ। ପୁଣି ମାଡ଼। ସମସ୍ତେ ମାରି ମାରି ଗଡ଼େଇ ଦେଲେ ସୁମନ୍ତକୁ। ବିୟୁଟିକୁ ଟେକି ନେଇଗଲେ। ଏ ଫାଇଟିଙ୍ଗ୍ ଦୃଶ୍ୟଟିକୁ କୌଣସି ଫାଇଟିଙ୍ଗ୍ ମାଷ୍ଟର ଦ୍ୱାରା କରାଇବାକୁ ପଡ଼ିବ। ଷ୍ଟ୍ରୋବ୍‌ରେ ଆଲୋକ ସଂପାତ କରାଯିବ। ତା'ପରେ ବିଉଟିର ଚିତ୍କାର ଶୁଭିବ ମାଇକ୍ରୋଫୋନ୍‌ରେ। ମଞ୍ଚ ଅନ୍ଧାର ହେବ। ଆବହ ସଂଗୀତ। ମଞ୍ଚ ନିସ୍ତବ୍ଧ। ଆଲୁଅ ଆସିଲା ବେଳକୁ ବିଉଟି ବିଧ୍ୱସ୍ତ। ସମସ୍ତେ ଚାଲିଯାଇଛନ୍ତି। ସେ ଚାରିପଟକୁ ଚାହିଁଲା। କେହି ନାହାନ୍ତି ତାକୁ ରକ୍ଷା କରିବା ପାଇଁ ଏତେ ବଡ଼ ପୃଥିବୀରେ। ସେ ଚିତ୍କାର କରି କାନ୍ଦିଲା ଓ କହିଲା- 'ନା-!'
ତା'ପରେ ତଳେ ପଡ଼ିଗଲା। କେଶ ଆଲୁଳାୟିତ। କଣ୍ଠ ଭାଙ୍ଗି ପଡୁଥିଲା... ବୋଧେ ସିଏ ମା'କୁ ଡାକୁଥିଲା- 'ମା'!'
(ମୂର୍ଚ୍ଛା ହେଇଗଲା ବିୟୁଟି। ଅନ୍ଧାର। ଆବହ ସଂଗୀତରେ କ୍ୟାସିଓ)

# ଏକବିଂଶ ଦୃଶ୍ୟ

(ପୂର୍ବ ଦୃଶ୍ୟର ସେଇ ଆବହ ସଂଗୀତ ଚାଲିଛି। ଆଲୁଅ ଆସିଲା ମଞ୍ଚ ଉପରକୁ ଏବଂ ଦେଖାଗଲା ରକ୍ତାକ୍ତ ଅବସ୍ଥାରେ ବେହୋସ ହୋଇ ପଡ଼ିଚି ବବ୍‌ଲୁ। ପ୍ରବେଶ କଲା ଭୀମା, ସାଙ୍ଗରେ ନରି ମଉସା ଓ ମଦନ ଡାକୁଆ। ମଦନ ଡାକୁଆ ଯାଇ ଆଉଁସି ପକେଇଲା ବବ୍‌ଲୁକୁ।)

ମଦନା: ସୁମନ୍ତ ବାବୁ! ସୁମନ୍ତ ବାବୁ! (ହଲେଇ ଦେଲା ସୁମନ୍ତ ଦେହ ଗୋଟେ ପଟକୁ, ଢଳି ପଡ଼ିଲା) ମଉସା! ଯା'ଙ୍କ ନାଡ଼ିଟା ଦେଖିଲ। ଦେଖ- ଅଛି ନା ଚାଲିଗଲା? (ନରି ଆସି ନାଡ଼ି ଦେଖିଲା)

ନରି: କାଇଁ? ବଞ୍ଚିଥିଲା ପରି ଜଣା ପଡୁନି ତ! (ଆବହସଙ୍ଗୀତରେ କାରୁଣ୍ୟ)

ମଦନା: ଚାଲିଗଲା ପିଲାଟା? ମୋ' ପାଖରେ ଦାଢ଼ି ବନଉଥିଲା... ହେଲେ ତାକୁ ମୁଁ ସାନ ଭାଇଟା ପରି ଦେଖୁଥିଲି ମଉସା!

ଭୀମା: ସାନ ଭାଇ? ଏ ଶଳା ମହାନ୍ତି ତୋର ସାନ ଭାଇ କେମିତି

ହେଲା ବେ? ଭୀମା ବେହେରା ସାଙ୍ଗରେ ପଙ୍ଗା ନଉଚି...
ଜାଣିନି ମୋ' ସାଙ୍ଗରେ ଲାଗିଲେ କ'ଣ ହୁଏ?

ନରି: ତା'ବୋଲି ପିଲାଟାକୁ ଜୀବନରେ ମାରିଦେବା?

ଭୀମା: ଶଳା ମୋ' ନାଁରେ ଏଫ୍.ଆଇ.ଆର୍. ଦେଇଥିଲା ଥାନାରେ।

ମଦନା: ହଉ, ମାଡ଼ ତ ଖାଇଲା- ଚାଲ ନେଇଯିବା ଡାକ୍ତରଖାନା-ଧର ଭୀମା।

ଭୀମା: ଛାଡ଼ ଶଳାକୁ- ପଡ଼ିଥାଉ ସେଇଠି- ଇଲେକ୍ସନ୍‌ରେ ପ୍ରଚାର କରିବ- ନାରୀମାନଙ୍କ ଇଜ୍ଜତରେ ପତାକା ଘୋଡ଼ଉଚି... (ଛେପ ପକାଇ) ଥୁ' ଶଳା-! ଏମିତି ପଡ଼ି ପଡ଼ି ମରୁ- (ଗୋଡ଼ରେ ଆଡ଼େଇ ଦେଲା- ଗଡ଼ିଗଲା ସଂଜ୍ଞାହୀନ ବବ୍‌ଲୁର ଦେହ।) ଚାଲ ଶଳେ! ଭିଲେନ୍ ରୋଲ୍ ସରିଲା। ଘରକୁ ଯାଇ ଶୋଇପଡ଼।

(ଆଲୋକ କେନ୍ଦ୍ରୀଭୂତ ହେଲା ଚେତା ହରାଇ ପଡ଼ିଥିବା ବବ୍‌ଲୁ ଉପରେ)

ନରି: ସରିନିରେ ଭୀମା! ସୁଟିଂ ହେଇଚି। ଏଇଟାକୁ ନେଇ ସେମାନେ ଥାନାକୁ ଯିବେ। ତା'ପରେ କେସ୍ ହବ।

ଭୀମା: କୋଉ ଶଳା ଥାନାକୁ ଯିବ? ସେ ଶଳା ଫୁଲ୍‌କୋବି ବୁଲୁ? ଶଳାକୁ ଫାର୍ଶାରେ ହାଣିବି। ନିଜେ ଠିଆ ହେଲାନି- ଏଇଟାକୁ ଠିଆ କଲା। ପଚାରିଲେ କହୁଚି ଯୁବ ପିଢ଼ିକୁ ଚାନ୍ସ ଦଉଚି। ଚାଲ ଶଳା ପଳେଇବା, ଏଇଠି ରହିଲେ କିଳା। କାଇଁ ଶଳା ସେଇ ସାମ୍ବାଦିକ- ତା' କ୍ୟାମେରାଟା ଛଡ଼େଇ ଆଣିବା।

(ଭୀମା, ମଦନା ଓ ନରି ଚାଲିଗଲେ। ଭୀମା ସେମାନଙ୍କୁ ଧକ୍କା ମାରି ମାରି ନେଇଗଲା। ମଞ୍ଚ ଅନ୍ଧାର ହେଲା।) ସୁମନ୍ତ ମହାନ୍ତିର ସଂଜ୍ଞାହୀନ ଦେହ ଉପରେ ଆଲୋକ କେନ୍ଦ୍ରିତ ହେଲା। ଆବହ ସଂଗୀତ ଗମ୍ଭୀର ଓ କରୁଣ। ପ୍ରବେଶ କଲା ବିକୁ। ଯାଇ ଠିଆ ହେଲା ସୁମନ୍ତର ସଂଜ୍ଞାହୀନ ଦେହ ପାଖରେ। ଆବହ ସଂଗୀତ କରୁଣ)

ବିକୁ: ମତେ କହିଲୁନି ସାଙ୍ଗ- ଏକା ଏକା ପଳେଇଲୁ ଝିଅଟାର ଇଜ୍ଜତ ବଞ୍ଚେଇବା ପାଇଁ? କ'ଣ ମିଳିଲାରେ? ଶଳା ଶେଷକୁ

ଶହୀଦ ହେଇଗଲୁ ? ବବ୍‌ଲୁ ? ସାଙ୍ଗରେ... ! ଫେରିଆ'... !
(କହୁ କହୁ କଣ୍ଠ ଭାଙ୍ଗି ପଡ଼ିଲା। ବବ୍‌ଲୁର ସଂଜ୍ଞାହୀନ ରକ୍ତାକ୍ତ ଦେହ ପାଖରେ ଠିଆ ହେଇ ତାକୁ ସାଲ୍ୟୁଟ କଲା।)

ତେରେ ମିଟ୍ଟୀମେ ମିଲ୍‌ଜାଓ୍ବାଁ
ଗୁଲ୍ ବନ୍‌କେ ମୈଁ ଖିଲ୍‌ଜାଓ୍ବାଁ
ଇତ୍‌ନୀସୀ ହୈ ଦିଲ୍‌କି ଆରଜୁ;
ତେରୀ ନଦୀ ଓଁ ସେ ବହଜାଓ୍ବାଁ
ତେରେ କ୍ଷେତୋଁ ମେ ଲହରାଓ୍ବାଁ
ଇତ୍‌ନୀସୀ ହୈ ଦିଲ୍‌କି ଆରଜୁ...

ବିଜୁ କାନ୍ଦୁଥିବା ଅବସ୍ଥାରେ ଆଲୁଅ କଟିଲା। ପୁଣି ଡିମରରେ ଆଲୁଅ ଆସିଲା ବେଳକୁ ନିଶାରେ ଟଳମଳ ଅବସ୍ଥାରେ ଖୁବ୍ ବଡ଼ ପାଟିରେ ଭୋ' ଭୋ' ହେଇ କାନ୍ଦି କାନ୍ଦି ପ୍ରବେଶ କଲା ବିଶ୍ୱାମିତ୍ର ମହାନ୍ତି।)

ବିଶ୍ୱାମିତ୍ର: ବବ୍‌ଲୁ! କୁଆଡ଼େ ଚାଲିଗଲୁରେ ଧନ... ତୋର... ତୋର ଏଇ ମଦୁଆ ବାପ ଉପରେ ରାଗକି ଚାଲି ଗଲୁ ? ଏଁ ? ମୁଁ ବନ୍ଧାକୋବି ପାର୍ଟିକୁ ଚାଲିଗଲି ବୋଲି... ତୁ' ଏକାଥରେ ଏ ଦୁନିଆ ଛାଡ଼ି ଚାଲିଯିବୁ ? ଦେଖ୍... ମୁଁ ଫେରି ଆସିଚି ଦେଖ। (ବବ୍‌ଲୁ ଆଡ଼କୁ ପଛ କରି ବସିଲେ।) ମୁଁ ତତେ ମେଡ଼ିକାଲ ନେବି... ଜମ୍‌ମା ଡରିବୁନି... ମୁଁ ଅଛି... ଆରେ ତୋ' ବାପ ବିଶ୍ୱାମିତ୍ର ମହାନ୍ତି ଅଛି। ... ରହ ମୁଁ ରିକ୍‌ସା ଡାକି ଆଣୁଚି- ନାଇଁ... ନାଇଁ...ଅଟୋ... ଡାକିବି... ମୋ' ପାଖରେ କ'ଣ ପଇସା ନାଇଁ... ଏ... ଅଟୋ... ରିକ୍‌ସା...
(ବିଶ୍ୱାମିତ୍ର ପାଗଳ ପରି ଅଟୋ ଓ ରିକ୍‌ସାକୁ ଡାକି ଡାକି... ମଞ୍ଚ ଉପରେ ଏପଟ ସେପଟ ହେଇ ହେଇ ଡାହାଣ ପଟକୁ ଚାଲିଗଲେ। ବାମ ପଟରୁ ପ୍ରବେଶ କଲେ ଇଲିସି; ବବ୍‌ଲୁର ମା'। ଆବହ ସଙ୍ଗୀତରେ ଝିଅଙ୍କ କଣ୍ଠର ଶାସ୍ତ୍ରୀୟ ଆଳାପ)

ଇଲିସି: ଆରେ ବାବୁ କୋଉଠି ଅଛୁ ? ବବ୍‌ଲୁ ? ବବ୍‌ଲୁ ମୋର କାଇଁ ? (ପଛରୁ ତରବରରେ ଆସିଲେ ବୁଲୁ ଭାଇ)

ବୁଲୁ: ରୁହନ୍ତୁ ମାଉସୀ ! ମାଉସୀ ! କୁଆଡ଼େ- ଯାଉଛନ୍ତି କୁଆଡ଼େ ?

ଇଲିସି: କାଇଁ ମୋର ବାବ୍‌ଲୁ? ମାଛ ଭାଜିକି ରଖିଥିଲି- ପୁଅଟା ଖାଇବାକୁ ଆସିଲାନି କାହିଁକି? ସେଇଥିପାଇଁ ତମକୁ ଫୋନ୍ କଲି ବାପା!

ବୁଲୁ: ହେଇଟି ମାଉସୀ... ସେଇଠି ପଡ଼ିଚି।

(ଇଲିସି ବୁଲି ପଡ଼ି ଚାହିଁଲେ। ରକ୍ତ ଜୁଡୁବୁଡୁ ଅବସ୍ଥାରେ ପଡ଼ିଚି ବାବ୍‌ଲୁ। କାବା ହେଇ ଚାହିଁ ରହିଲେ।)

ଇଲିସି: କ'ଣ ହେଇଚି ମୋ' ପୁଅର? କିଏ? କିଏ ଏମିତି କଲା ତାକୁ?

ବୁଲୁ: ବନ୍ଧାକୋବି ଗୁଣ୍ଡାମାନେ ଗୋଟେ ଝିଅକୁ ରେପ୍ କରିବାକୁ ଚେଷ୍ଟା କରୁଥିଲେ ମାଉସୀ... ବବ୍‌ଲୁ... ସେ ଝିଅଟାକୁ ରକ୍ଷା କରିବାକୁ ଯାଇ ଶହୀଦ ହେଇଗଲା।

ଇଲିସି: (ଚିତ୍କାର କଲେ) ନାଁ! ବବ୍‌ଲୁ ମୋର ଗୋଟେ ବୋଲି ପୁଅ... ଆଉ କେହି ନାଇଁ ମୋର ଏ ଦୁନିଆରେ- ମୁଁ ତାକୁ ଶହୀଦ ହବାକୁ ଦେବିନି...ଏ ଚୋର ପଲିଟିସିଆନ୍‌ମାନଙ୍କ ଦେଶରେ ମୋ' ପୁଅ ଶହୀଦ ହବ... ? ଛାର ଗୋଟେ ଝିଅର ଇଜ୍ଜତ ବଞ୍ଚାଇବାକୁ ଯାଇ ଶହୀଦ ହବ? ନା... ମୋ' ପୁଅକୁ ମୁଁ ଶହୀଦ ହେବାକୁ ଦେବିନି, ମୁଁ ତାକୁ ବଞ୍ଚେଇବି। ଚାଲ ବୁଲୁ! ଧର ତାକୁ ଗାଡ଼ିରେ ପକେଇ ଡାକ୍ତରଖାନା ନେଇଯିବା।

(ବୁଲୁ ଆଉ ଇଲିସି ବାବ୍‌ଲୁକୁ ଧରି ନେଇଗଲେ।)

# ଦ୍ୱାବିଂଶ ଦୃଶ୍ୟ

(ଆଲୋକ ଆସିଲା ବେଳକୁ ଚିତ୍କାର କରି କହୁଚି ବିଯୁଟି)

ବିଯୁଟି: ନା', ମୁଁ ଡାକ୍ତରଖାନା ଯିବିନି ! ତମେ ଶଳା କୁକ୍କୁରମାନଙ୍କ ସମାଜରେ ମୁଁ ଡାକ୍ତରଖାନା ଦେଇ ଫେରାଦ ହେବି ? କେବେ ନୁହେଁ। ଏ ଶଳେ ମତେ ଆଉଥରେ ରେପ୍ କରିବେ ! ଜୀବନ ସାରା... ମୁଁ ଖାଲି ରେପ୍ ହଉଥିବି... ? କୋଉଠି ମାଗଣାରେ... କୋଉଠି ପଇସା ନେଇ ! ଏ ପଇସା ମୋର କ'ଣ ହବରେ ଶଳେ ? କୋଟି କୋଟି ହେଇ ଛ' କୋଟି ଦେଇଚି ଶଳା... (ବିଡ଼ା ବିଡ଼ା ନୋଟ୍ ଖୋଲି ଫୋପାଡ଼ିଲା ଘରିଆଡ଼େ) ଛ' ଜଣ ରେପ୍ କଲେ ଜଣକ ପରେ ଜଣେ...ଏଗୁଡ଼ା କୁକ୍କୁର ନା ମାଙ୍କଡ଼... ଯାଅ ଶଳେ ! ଜଙ୍ଗଲରେ ରହିବ ଯାଅ। ଏ ସହରର ରାସ୍ତାଟାକୁ କାଇଁକି ଜଙ୍ଗଲ କରି ଦଉଚ ? ତମେ ଶଳେ ମଣିଷ ନୁହଁରେ... କିଏ ଭାଲୁ ତ କିଏ ହେଟାବାଘ... ପଇସା ଦେଇ କିଣିଥିଲ ମତେ ?

ବାପା ଶଳା ମତେ ବାହା କରିପାରିଲା ନାଇଁ, ଛ' ବର୍ଷର ହେଇଥିଲି... ମା' ମରିଗଲା। ଏବେ ଶଳେ ପଇସା ଦେଇ ମୋ' ଉପରେ ଘୋଡ଼ା ଚଢୁଚ? ଧିକ୍ ତମ ପଇସାକୁ... ଧିକ୍ ତମର ଚୋରା ଟଙ୍କାକୁ... ତମେ ସବୁ ଶ୍ୱାପଦ... ତମେ ସବୁ ହିଂସ୍ର ଜନ୍ତୁ ବେ! ତମ ମାଇପ ରେପ୍ ହେବେ... ତମ ମା' ରେପ୍ ହେବେ... ତମ ଝିଅ ରେପ୍ ହେବେ... ମର ଶଳେ!

(ପ୍ରବେଶ କଲା ଖୋକା କାନୁନ୍‌ଗୋ- ପୀତାମ୍ବର କାନୁନ୍‌ଗୋଙ୍କ ପୁଅ ଖୋକା- ବୟସ ୨୫ରୁ ୩୦ ଭିତରେ। ସେ ବିୟୁଟିର ଏ ଅବସ୍ଥା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଇ, ଯାଇ ତାକୁ ଧରିଲା।)

ଖୋକା: ବିୟୁଟି! ପ୍ଲିଜ୍! ତୁ ଏମିତି ହ'ନା! ପଇସାଗୁଡ଼ା କାଇଁକି ଫୋପାଡୁଚୁ?

ବିୟୁଟି: ଏଗୁଡ଼ା ଦେଇ ସେମାନେ ମତେ ରେପ୍ କଲେ ଖୋକା ଭାଇ!

ଖୋକା: କୋଉମାନେ? କୋଉମାନେ ତତେ ରେପ୍ କଲେ ବିଉଟି?

ବିୟୁଟି: ସେମାନେ ଶ୍ୱାପଦ। ସହରଟାକୁ ଜଙ୍ଗଲ କରିଦେଲେଣି ଖୋକା ଭାଇ! ଅନ୍ଧାର ହେଲେ ବାଘ, ଭାଲୁ, ସିଂହ ହେଇ ସହର ରାସ୍ତାରେ ବୁଲୁଛନ୍ତି। ମତେ ଏକଲା ଦେଖି ମୋ' ଉପରକୁ ମାଡ଼ି ଆସିଲେ। ବହୁତ ଖୋଜିଲି... ତଣ୍ଟି ଫଟେଇ ଡାକିଲି ବବ୍‌ଲୁ ଭାଇକୁ, ବବ୍‌ଲୁ ଭାଇ ଆସିଲାନି... କୁଆଡ଼େ ଗଲା ସିଏ? ମତେ କହିଥିଲା, ତୁ' ଡାକିଲେ ମୁଁ ଆସି ରକ୍ଷା କରିବି, କାଇଁ? କାଇଁ ବବ୍‌ଲୁ ଭାଇ?

(ଝିଅ କଣ୍ଠର ଆଳାପ)

ଖୋକା: ଆମ ବବ୍‌ଲୁ? ସିଏ ପରା ଏମ୍.ଏଲ୍.ଏ. ପାଇଁ ଇଲେକ୍‌ସନ୍ ଲଢୁଚି!

ବିୟୁଟି: ବାବ୍‌ଲୁ ଭାଇ ଏମ୍.ଏଲ୍.ଏ. ହବ? ତା'ପରେ ମନ୍ତ୍ରୀ ହବ?

ଖୋକା: ଆଜି ଭୋଟ ଗଣତି ଚାଲିଛି...

ବିୟୁଟି: ମନ୍ତ୍ରୀ ହେଲେ ମତେ ରକ୍ଷା କରିବ ବୋଲି କହିଥିଲା?

(ହଠାତ୍ ମଞ୍ଚ ଅନ୍ଧାର ହେଲା। ପ୍ରଚ୍ଛଦପଟରୁ ଶୁଭିଲା ଏକ ବିରାଟ ଶୋଭାଯାତ୍ରା ଏବଂ ସ୍ଲୋଗାନ!

(କ) ସୁମନ୍ତଭାଇ: ଜିନ୍ଦାବାଦ!

(ଖ) ବବ୍‌ଲୁ ଭାଇ ଅମର ରହେ

ଜିନ୍ଦାବାଦ! ଜିନ୍ଦାବାଦ! ଅମର ରହେ... ଅମର ରହେ।

ପୁଣି ମଞ୍ଚ ଆଲୋକିତ ହେଲାବେଳକୁ ବାବ୍‌ଲୁ ବେକରେ ୧୦/୧୫ଟା ଫୁଲମାଳ ଓ ତାକୁ ଶୋଭାଯାତ୍ରାରେ ନଉଛନ୍ତି। ଶୋଭାଯାତ୍ରା ଏପଟୁ ସେପଟକୁ ଚାଲିଗଲା। ଫୁଲ୍‌କୋବି ଦଳର ଗୋଟେ ପତାକା ଧରି ପ୍ରବେଶ କଲେ ଇଲିସି। ପାଖରେ ବୁଲୁ ଭାଇ। ଇଲିସି ଦର୍ଶକମାନଙ୍କୁ କହିଲେ...)

ଇଲିସି: ମୁଁ ସୁମନ୍ତ ମହାନ୍ତି ଓରଫ୍ ବାବ୍‌ଲୁର ମା'! ବନ୍ଧାକୋବି ପାର୍ଟିର ଗୁଣ୍ଡାମାନଙ୍କ ସାଙ୍ଗରେ ଲଢ଼େଇ କରି ଜୀବନକୁ ବିପନ୍ନ କରିଥିଲା ବବ୍‌ଲୁ। ସମସ୍ତେ ଆଶା ଛାଡ଼ି ଦେଇଥିଲେ। ହେଲେ ମୁଁ ତା'ର ମା'! ମୋ' ରକ୍ତ ଦେଇ ତାକୁ ବଞ୍ଚେଇଚି, ମା'ଶ୍ମଶାନକାଳୀଙ୍କୁ ଡାକି ଡାକି ବଞ୍ଚେଇଚି ବାବ୍‌ଲୁକୁ। ଆପଣମାନଙ୍କୁ ବହୁତ ଧନ୍ୟବାଦ! ମରଣ ମୁଖରୁ ଫେରିଥିବା ମୋ' ପୁଅଟାକୁ ଭୋଟରେ ଜିତେଇ ଦେଲେ!

(ହାତରୁ ମାଇକ୍ରୋଫୋନ୍ ଛଡ଼େଇ ଆଣିଲେ ବୁଲୁଭାଇ)

ବୁଲୁଭାଇ: ଆଉ ଗୋଟେ ଖୁସିର ଖବର, ସୁମନ୍ତ ବାବୁ ନିଜ ଜୀବନକୁ ବିପନ୍ନ କରି ଆମ ରାଜ୍ୟର ଗୋଟେ ଗରିବ ଝିଅକୁ ବନ୍ଧାକୋବି ଦଳର ଗୁଣ୍ଡାମାନଙ୍କ ହାତରୁ ବଞ୍ଚେଇଛନ୍ତି। ତେଣୁ ବନ୍ଧୁଗଣ! ମୁଁ ନିଜେ ଦଳର ମୁଖ୍ୟମନ୍ତ୍ରୀ ନହୋଇ ଶ୍ରୀ ସୁମନ୍ତ ମହାନ୍ତିଙ୍କୁ ଦେଶର ସର୍ବ କନିଷ୍ଠ ମୁଖ୍ୟମନ୍ତ୍ରୀ ରୂପେ ନିର୍ବାଚିତ କରୁଛି! ନମସ୍କାର! (ପ୍ରଚଣ୍ଡ କରତାଳି ଭିତରେ ମଞ୍ଚ ଅନ୍ଧାର ହେଲା। ପୁଣି ଆଲୁଅ ଆସିଲା ବେଳକୁ ଧୋତି, ପଞ୍ଜାବୀ ଓ ଧଳା କନା ଟୋପି ପିନ୍ଧି ପ୍ରବେଶ କଲେ, ମୁଖ୍ୟମନ୍ତ୍ରୀ ସୁମନ୍ତ ମହାନ୍ତି। ଘଡ଼ି ଦେଖିଲେ। ତା'ପରେ ଭିତରେ କାହାକୁ ଜଣକୁ କହିଲେ.. )

ବବ୍‌ଲୁ: ଏ! ଡ୍ରାଇଭରକୁ କୁହ! ଗାଡ଼ି ବାହାର କରିବ!

(ୟୁନିଫର୍ମ ଓ ମୁଣ୍ଡରେ ଟୋପି ପିନ୍ଧା ଗୋଟେ ଖାନସମା ପହଞ୍ଚିଲା) ଡ୍ରାଇଭରକୁ କହେ- ମୁଁ ଯିବି ସେକ୍ରେଟାରୀଏଟ୍!

ଖାନସମା: ରୋଷେଇ ହେଇଗଲାଣି ସାର୍! ଖାଇଦେଇ ଯିବେ!

ବବ୍‌ଲୁ: କ'ଣ ହେଇଚି ଖାଇବା ପାଇଁ?

ଖାନସମା: ସାର୍ ପଲାଉ, କୋଫ୍ତା ଆଉ ପୋଟଳ କୁରୁମା! ଚିଲ୍ଲି ପନିର୍‌ଟା ବସିଚି। ପାଞ୍ଚ ମିନିଟ୍ ଲାଗିବ!

ବବ୍‌ଲୁ: ବାଢ଼। (ଖାନ୍‌ସମା ଯାଉଥିଲା) ଶୁଣ (ଖାନସମା ଅଟକି ଗଲା) ଟିକିଏ ଆଳୁ ଭରତା ହେଇପାରିବ?

ଖାନସମା: ଅଖାଦ୍ୟ! ସାର୍ ମୁଖ୍ୟମନ୍ତ୍ରୀ ଯଦି ଆଳୁ ଭରତା ଖାଇବେ... ଦେଶବାସୀ କ'ଣ ଖାଇବେ? ମଦରଙ୍ଗା ଶାଗ?

ବବ୍‌ଲୁ: ଦେଖ! ସବୁ ମୁଖ୍ୟମନ୍ତ୍ରୀ ଯାହା ମୁଁ ତାହା ନୁହେଁ। ତମେ ଗୋଟେ ଦିଇଟା ଆଳୁ ସିଝାଇ ଦିଅ! (ଦୌଡ଼ି ଆସିଲା ଡ୍ରାଇଭର) (ଭାଓଲିନ୍‌ରେ ଗୋଟେ ମଞ୍ଜଥରା ଆଳାପ)

ଡ୍ରାଇଭର: ସାର୍ ଗେଟ୍ ପାଖରେ ଗୋଟେ ପାଗଳୀ ଠିଆ ହେଇଚି। ଗାଡ଼ି ବାହାର କରିବାକୁ ଦଉନି। କହୁଚି, ମୁଖ୍ୟମନ୍ତ୍ରୀ ସାର୍‌ଙ୍କୁ ଦେଖା କରିବି।

ବବ୍‌ଲୁ: (ପକେଟରୁ ଦି'ହଜାର ଟଙ୍କିଆ ନୋଟ୍ ବାହାର କରି) ଯାଅ- ତାକୁ ଦେଇଦିଅ- ଯଦି ଖାଇନଥିବ... ତାକୁ ଗଣ୍ଡେ ଖାଇବାକୁ ଦେଇଦିଅ।

ଡ୍ରାଇଭର: ସାର୍! (ଯାଉଥିଲା)

ବବ୍‌ଲୁ: ଶୁଣ! (ଡ୍ରାଇଭର ଅଟକି ଗଲା) ମୋ' ପାଇଁ ଯୋଉ ପଲାଉ ଆଉ ଚିଲ୍ଲି ପନିର କରିଚ ତାକୁ ଖାଇବାକୁ ଦବ। ମୁଁ ପଖାଳ ଆଉ ଆଳୁ ଭରତା ଖାଇବି। ଯାଅ ତାକୁ ଆଣି ପଲାଉ ଖୁଆଇବା ବ୍ୟବସ୍ଥା କର! (ଚାଲିଗଲେ ମୁଖ୍ୟମନ୍ତ୍ରୀ)

(ମଞ୍ଚ ଉପରେ ଡ୍ରାଇଭରଟା ଏକା)

ଡ୍ରାଇଭର: ମୋ' ଜୀବନକାଳ ଭିତରେ ତିନିଟା ମୁଖ୍ୟମନ୍ତ୍ରୀ ଦେଖିଲିଣି। ଶଳା ସମସ୍ତେ ବିରିୟାନୀ, ପଲାଉବାଲା... ଇଏ କ'ଣ ପଖାଳ ଆଉ ଆଳୁ ଭରତା ଖାଇବାକୁ କହିଲେଣି! ଯଦି ଭିଜିଲାନ୍ସ କି ଇ.ଡ଼ି. ଧରିବ... ଖାନସମାଟାର ଚାକିରି

ଚାଲିଯିବ। ସମସ୍ତେ କହିବେ; ଶଳା ମୁଖ୍ୟମନ୍ତ୍ରୀଙ୍କୁ ପଖାଳ କଂସା ଧରେଇ ଦେଇଚି ଆଳୁ ଭରତା ସାଙ୍ଗରେ, ହେଃ! ଏମିତିକା ବଢ଼ିଆ ମୁଖ୍ୟମନ୍ତ୍ରୀ ଏ ଦେଶ କେବେ ଦେଖିନଥିଲା।

(ତିମିରରେ ଆଲୁଅ କଟିଲା।)

# ତ୍ରୟବିଂଶ ଦୃଶ୍ୟ

(ଖାନସମା ବିୟୁଟିର ବାହୁକୁ ଧରି ଟାଣି ଟାଣି ଆଣିଲା ମଞ୍ଚର ମଧ୍ୟଭାଗ ପର୍ଯ୍ୟନ୍ତ। ଛଟପଟ ହେଇ ଚିତ୍କାର କରୁଥିଲା: 'ବଞ୍ଚାଅ ! କିଏ କୋଉଠି ଅଛ ବଞ୍ଚାଅ !')

ବିୟୁଟି: ଆଃ ! ବଞ୍ଚାଅ ! ବଞ୍ଚାଅ ମତେ ! କିଏ କୋଉଠି ଅଛ ବଞ୍ଚାଅ ! ବବ୍‌ଲୁ ଭାଇ ! !

ଖାନସମା: ଶଟ୍‌ଅପ୍ ! ଏଇଠି ବସ୍ ! ମୁଖ୍ୟମନ୍ତ୍ରୀ କହିଲେ ଖାଇକି ଯିବୁ ! (ଚାଲିଗଲା ଖାନସମା, ବିୟୁଟି ଏକା)

ବିୟୁଟି: (ପୁଣି ଚିତ୍କାର କଲା) ବଞ୍ଚାଅ ! ବଞ୍ଚାଅ ମତେ ! (ବିୟୁଟି ଚାରିଆଡ଼କୁ ଚାହିଁଲା, ଆତଙ୍କ ଓ ଭୟରେ ସେ ଉତ୍ପୀଡ଼ିତା) କେହି ନାହାନ୍ତି। କାହିଁକି କିଏ ନାହାନ୍ତି ? ବବ୍‌ଲୁ ଭାଇ କୁଆଡ଼େ ଗଲା ? ସିଏ ପରା ମୁଖ୍ୟମନ୍ତ୍ରୀ ହେଇଚି ! କହିଥିଲା: ମୁଁ ଡାକିଲେ ଆସିବ ! କାଇଁ ? କାଇଁ ବବ୍‌ଲୁ ଭାଇ ?... କିଏ କୋଉଠି ନାଇଁ... ଏଡ଼େ ବଡ଼ ଦେଶ... ସାଢ଼େ ଚାରିକୋଟି ଲୋକ... ଗୋଟେ ମା'ନଥିବା ଝିଅର ଇଜ୍ଜତ ବଞ୍ଚେଇବା ଲୋକଟେ ମିଳୁନି ? ଛି ଶଳେ ! ତମକୁ ଲାଜ ମାଡୁନି ! ଥୁଃ ! ! (ହଠାତ୍ ଫ୍ରିଜ୍ ହେଇଗଲା ବିୟୁଟି। କିବୋର୍ଡ଼ରେ ସଙ୍ଗୀତ ଗମ୍ଭୀର, କ୍ରାସ୍ ଶବ୍ଦ। ମଞ୍ଚ ଅନ୍ଧାର।)

ଓଡ଼ିଶାର ନବେ ପ୍ରତିଶତ ଲେଖକ ନାଟକ ଲେଖି ଜାଣନ୍ତି ନାହିଁ। କିନ୍ତୁ ଶତ ପ୍ରତିଶତ ସମାଲୋଚକଙ୍କୁ ନାଟକର ମୂଲ୍ୟାୟନ କରିବା ଆସେ ନାହିଁ। ଏମିତି ଏକ ନାଟ୍ୟଦ୍ରୋହୀ ଏବଂ ବିକାରଗ୍ରସ୍ତ ସାହିତ୍ୟିକ ପରିମଣ୍ଡଳରେ ଏକାଏକା ରମେଶ ପାଣିଗ୍ରାହୀ(୧୯୪୪) ଦୀର୍ଘ ଷାଠିଏ ବର୍ଷ ଧରି ନିଃସଙ୍ଗ ଭାବରେ ସାହିତ୍ୟ କ୍ଷେତରେ ନାଟକର ଶିଆର କାଟି ଚାଲିଛନ୍ତି। ୯୧ଟି ଓଡ଼ିଆ ନାଟକ, ୧୮ଟି ଯାତ୍ରା ନୀଁଟକ ଓ ୨୩ଟି ଇଂରାଜୀ ନାଟକର ରଚୟିତା ରମେଶ ପାଣିଗ୍ରାହୀଙ୍କର ଏହା ୯୨ତମ ନାଟକ। କାହାଣୀ, ଚରିତ୍ରାୟନ ଓ ଦୃଶ୍ୟାୟନ ସବୁଥିରେ 'ପାଉଁଶତଳ ନିଆଁ' ଦର୍ଶକଙ୍କର ମଞ୍ଜ ଥରାଇ ଦେବା ପାଇଁ ସକ୍ଷମ। ପାଠକ ହୁଅନ୍ତୁ କି ଦର୍ଶକ ସମ୍ବେଦନଶୀଳ ହେଇନଥିଲେ ଆଖିରେ ଲୁହ ଆସି ନପାରେ କିନ୍ତୁ ନାଟକଟି ଜବରଦସ୍ତ ଛାତି ଭିତରେ ପଶିଯିବ ନିଶ୍ଚୟ।

- ପ୍ରକାଶକ




Barsha Publication
Plot-No- 722(p), Gopabandhu Nagar Unit-8
Bhubaneswar, Pin: 751012, ODISHA, INDIA
1st Edition : 2022
RS. 150.00

